# ସଦାନନ୍ଦ ମହାନ୍ତି ସ୍ମରଣିକା କମିଟୀ

ପାର୍କ ସାହି, ବ୍ରହ୍ମପୁର- ୭୬୦ ୦୦୨

ଶ୍ରୀ ନିତ୍ୟାନନ୍ଦ ପ୍ରଧାନ, ଏମ୍.ଏଲ୍.ଏ
ଶ୍ରୀ ପର୍ଶୁରାମ ପଣ୍ଡା, ଏମ୍.ଏଲ୍.ଏ.
କବି ଲକ୍ଷ୍ମୀ ନାରାୟଣ ମହାପାତ୍ର
ଶ୍ରୀ ଏନ୍.ଏସ୍. ଆୟାଙ୍ଗାର
ଶ୍ରୀ ପ୍ରଶାନ୍ତ କୁମାର ପାଢ଼ଯୋଷୀ
ଶ୍ରୀ ରମେଶ ପାଢ଼ୀ
ଶ୍ରୀ ପ୍ରକାଶ ପାତ୍ର, ସଂପାଦକ

ଗଞ୍ଜାମ ଜିଲ୍ଲା ସି.ପି.ଆଇ. କମିଟୀ ତରଫରୁ
ପ୍ରଶାନ୍ତ ପାଢ଼ଯୋଷୀଙ୍କ ଦ୍ୱାରା ପ୍ରକାଶିତ ଓ ଲକି ଅଫ୍‌ସେଟ୍ ପ୍ରା. ଲିଃ., ବ୍ରହ୍ମପୁର—୮ ଓ ଲକି ପ୍ରିଣ୍ଟର୍ସ, କମାପଲ୍ଲୀରେ ମୁଦ୍ରିତ

## ଶତ ସଂଗ୍ରାମର ସାରଥୀ :-

ନଭେମ୍ବର ୧୬ ତାରିଖ ରାତ୍ର ୧୦ ଘଣ୍ଟା । ଭଣ୍ଡାରୀପୋଖରୀ ଉପନିର୍ବାଚନରୁ ନିର୍ବାଚନ କାର୍ଯ୍ୟ ଶେଷକରି ଭୁବନେଶ୍ୱରସ୍ଥ କମ୍ୟୁନିଷ୍ଟ ପାର୍ଟିର ରାଜ୍ୟ ଦପ୍ତର ଭଗବତୀ ଭବନରେ ପହଞ୍ଚି ଶୁଣିଲୁ ସାଥୀ ସଦାନନ୍ଦ ବାବୁ ଆଉ ନାହାନ୍ତି । ଶୁଣି ବିଶ୍ୱାସ ହେଲା ନାହିଁ । ଠିକ୍ କୋଡ଼ିଏ ଦିନ ପୂର୍ବରୁ ତପ୍ତପାଣି ଠାରେ ରାଜ୍ୟ ଓ ଗଞ୍ଜାମ ଜିଲ୍ଲା ନେତୃମଣ୍ଡଳୀଙ୍କ ସହିତ ଦୁଇଦିନ ହସଖୁସିରେ କଟାଇଥିଲେ । ତାଙ୍କ କଥା ଭାବି ରାତ୍ର ନିଦ ହେଲା ନାହିଁ । ୧୭ ତାରିଖ ସକାଳେ ତାଙ୍କ ମର ଶରୀରକୁ ଶେଷ ସମ୍ମାନ ଦେବା ପାଇଁ ଭଗବତୀ ଭବନକୁ ଅଣାଗଲା । ତାଙ୍କ ମୁହଁକୁ ଚାହିଁ ମନେ ହେଲା ନାହିଁ, ସେ ଆମକୁ ଛାଡ଼ି ଚାଲିଯାଇଛନ୍ତି— ମନେ ହେଲା ସତେ ଯେପରି କୌଣସି ଏକ ସଂଗ୍ରାମରେ ବିଜୟୀ ହୋଇ ଆନନ୍ଦରେ ଶୋଇ ରହିଛନ୍ତି ।

ଓଡ଼ିଶା ବିଶେଷ କରି ଗଞ୍ଜାମ ଜିଲ୍ଲା ଶତ ସଂଗ୍ରାମର ସାଥୀ ସଦାନନ୍ଦ ମହାନ୍ତି ଥିଲେ ସାରଥୀ । ସେ ଥିଲେ ଜଣେ ମାର୍କ୍ସବାଦୀ ଦାର୍ଶନୀକ, ଶୋଷିତ ମାନଙ୍କ ପାଇଁ ସଂଗ୍ରାମର ସାରଥୀ, ସୁବକ୍ତା, ଛାତ୍ର, ଯୁବକ, ଚାଷୀ ମୂଲିଆ, ଶ୍ରମିକମାନଙ୍କ ସଂଗଠନ । ଛାତ୍ର ଜୀବନରୁ ସେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ଗଞ୍ଜାମ ଜିଲ୍ଲାରେ ଅଖିଳ ଭାରତ ଛାତ୍ର ସଂଘ ଗଠନ କରି ହୋଇଥିଲେ ଅଦ୍ୱିତୀୟ ଛାତ୍ର ନେତା । ଟାକରଟାର ଚାଷୀ ଆନ୍ଦୋଳନକୁ ସମଗ୍ର ଜିଲ୍ଲାରେ ପ୍ରସାର କରି ସେ ହୋଇଥିଲେ ଚାଷୀ ନେତା । ବ୍ରହ୍ମପୁରରେ ଚାଉଳ କିଣି ଶ୍ରମିକ, ପ୍ରେସ୍ କର୍ମଚାରୀ, ଶଗଡ଼ିଆ, ରାଜମିସ୍ତ୍ରୀ ମାନଙ୍କୁ ପ୍ରଥମ କରି ସଂଗଠିତ କରି ସଂଗଠନ ଗଢ଼ି ସେ ହୋଇଥିଲେ ଶ୍ରମିକ ନେତା । ଜିଲ୍ଲା ପାର୍ଟି ସଂପାଦକ ରୂପେ ଜିଲ୍ଲାର ସଂଗଠନକୁ ପ୍ରସାରିତ କରିଥିଲେ ସମଗ୍ର ଜିଲ୍ଲାରେ । କବିସୂର୍ଯ୍ୟନଗର ନିର୍ବାଚନମଣ୍ଡଳୀରୁ ଦୁଇ ଦୁଇ ଥର ନିର୍ବାଚିତ ହୋଇ କେବଳ କବିସୂର୍ଯ୍ୟନଗର ନିର୍ବାଚନମଣ୍ଡଳୀ ନୁହଁ, ସମଗ୍ର ରାଜ୍ୟର ସମସ୍ୟାକୁ ବିଧାନସଭାରେ ଉପସ୍ଥାପିତ କରିଥିଲେ । ସେ ୧୬ ବର୍ଷ ଧରି ରାଜ୍ୟ ସଂପାଦକ ରହିଥିଲେ ।

ସାଥୀ ସଦାନନ୍ଦ ମହାନ୍ତିଙ୍କ ବିୟୋଗରେ ତାଙ୍କ ପରିବାର, ଘରର ମୁରବୀଙ୍କୁ ହରାଇଲେ, ଗଞ୍ଜାମ ତଥା ରାଜ୍ୟ ପାର୍ଟି ଜଣେ ପଥ ପ୍ରଦର୍ଶକ, ରାଜନୈତିକ ଗୁରୁ, ତଥା ସଂଗଠକକୁ ହରାଇଲେ । ସମଗ୍ର ଓଡ଼ିଶାର ଜନସାଧାରଣ ସେମାନଙ୍କ ସୁଖ ଦୁଃଖର ସାଥୀ ତଥା ସେମାନଙ୍କ ସମସ୍ୟା ସମାଧାନ ପାଇଁ ସଂଗ୍ରାମର ଜଣେ ସାରଥୀଙ୍କୁ ହରାଇଲେ । ତାଙ୍କରି ବିୟୋଗରେ ସ୍ମରଣିକା କମିଟି ପକ୍ଷରୁ ଗଭୀର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ସାଥୀ ସଦାନନ୍ଦ ମହାନ୍ତିଙ୍କ ସ୍ମୃତିକୁ ଉଦ୍‌ଜୀବିତ ରଖିବା ପାଇଁ ଏହି ସ୍ମରଣିକା ପ୍ରକାଶ ମାଧ୍ୟମରେ କିଞ୍ଚିତ ପ୍ରୟାସ କରାଯାଇଛି । ସ୍ୱଳ୍ପ ସମୟ ମଧ୍ୟରେ ସ୍ମରଣିକାଟିକୁ ପ୍ରକାଶ କରାଯାଉଥିବା ଯୋଗୁଁ ତାଙ୍କର ସମସ୍ତ ସାଥୀ ଓ ଦରଦ ବନ୍ଧୁଙ୍କ ଲେଖା ପ୍ରକାଶ କରିବା ସମ୍ଭବପର ହୋଇପାରୁ ନାହିଁ । ସ୍ମରଣିକା ପ୍ରକାଶ କରିବାରେ ସ୍ମରଣିକା କମିଟୀର ସଦସ୍ୟମାନଙ୍କ ସମସ୍ତ ପ୍ରକାର ସହଯୋଗ ଓ ଏହାର ମୁଦ୍ରଣ ପାଇଁ ଲକି ଅଫ୍‌ସେଟ୍‌ର ମାଲିକ କାଳିବାବୁ ଓ ଅନ୍ୟମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ସମୟର ସ୍ୱଳ୍ପତା ମଧ୍ୟରେ ସ୍ମରଣିକା ପ୍ରକାଶ ପାଉଥିବା ଯୋଗୁଁ ମୁଦ୍ରାଗତ ତଥା ସଂପାଦନାଗତ ତ୍ରୁଟି ନିଶ୍ଚିତ ଭାବେ ରହି ଯାଇଥିବ । ସେଥିପାଇଁ କ୍ଷମା ପ୍ରାର୍ଥନା କରୁଛି ।

**ପ୍ରକାଶ ପାତ୍ର, ସଂପାଦକ**
**ସଦାନନ୍ଦ ମହାନ୍ତି ସ୍ମରଣିକା କମିଟୀ**

New Delhi
20.11.91

My dear Baboo,

Only today, I returned from Korea and got the sad news of Sadananda Babu's passing away. Ir came as a painful shock to me. As I had last seen him (along with you) in the AIMI, looking chearful and on the road to convalescence.

I am deeply grieved by this great loss and send my heart feel condolence to you and all other members of the family. Com. Sadananda was a great soul and will be greatly missed by all.

Your's sincerely
**Indrajit Gupta**

# ଶ୍ରଦ୍ଧାଞ୍ଜଳି

**ଲୋକନାଥ ଚୌଧୁରୀ**

କମରେଡ୍ ସଦାନନ୍ଦଙ୍କର ଏତେ ଶୀଘ୍ର ଦେହାନ୍ତ ହୋଇଯିବ, ଏହା ଆମ ସମସ୍ତଙ୍କର କଳ୍ପନାର ବାହାରେ ଥିଲା । ତାଙ୍କର ମୃତ୍ୟୁ ଆମ ଓଡିଶା ପାର୍ଟିରେ ଅପୂରଣୀୟ କ୍ଷତି ଘଟାଇଲା । ଦୀର୍ଘଦିନ ଧରି ରୋଗଗ୍ରସ୍ତ ହୋଇଥିଲେ ମଧ୍ୟ ପାର୍ଟି କିପରି ଆଗକୁ ଯିବ ତାହା ଥିଲା ତାଙ୍କର ପ୍ରଧାନ ବିଚାର । ଯେଉଁ କେତେଜଣ ଓଡିଶାରେ କମ୍ୟୁନିଷ୍ଟ ବୋଲି ଗତ ଦଶନ୍ଧି ଧରି ଜନ ମାନସରେ ସ୍ଥାନ ପାଇଥିଲେ, ସେଥିମଧ୍ୟରେ ତାଙ୍କର ଆସନ ଥିଲା । ସବାଗ୍ରେ ତାଙ୍କର ବିୟୋଗରେ ଆଜି ଓଡିଶାର ପାର୍ଟି ନେତୃହରା ହୋଇଗଲା ।

ସଦାନନ୍ଦ ବାବୁଙ୍କ ସହିତ ମୋର ପରିଚୟ ୧୯୪୫ ସାଲରୁ ।.ଗଞ୍ଜାମର ଛାତ୍ର ଆନ୍ଦୋଳନର ସେ ଥିଲେ ଅବିସମ୍ବାଦିକ ନେତା । ଛାତ୍ର ସଂଘର ସେ ଥିଲେ ପ୍ରଧାନ ସାରଥୀ । ସେଥିପାଇଁ ଓଡିଶାର ଛାତ୍ର ସଂଘ, ସେ ଜେଲରେ ଥିଲେ, ମଧ୍ୟ ତାଙ୍କୁ ରାଜ୍ୟ ସଂପାଦକ ନିର୍ବାଚନ କରିଥିଲେ, ଛାତ୍ର ଆନ୍ଦୋଳନ ସହିତ ସେ ଗଞ୍ଜାମର ରୟତ ଆନ୍ଦୋଳନରେ ସାଥୀ ଗୋବିନ୍ଦ ପ୍ରଧାନ, ସାଥୀ ହରିହର ଦାସଙ୍କ ସହିତ ସାମିଲ ହୋଇଥିଲେ । ମୁସ୍ତାଦାରୀ ଜମିଦାରୀ ଉଚ୍ଛେଦ ପାଇଁ ଯେଉଁ ଆନ୍ଦୋଳନ ସମସ୍ତ ଗଞ୍ଜାମ ଜିଲ୍ଲାରେ ବ୍ୟାପ୍ତି ଲାଭ କରିଥିଲା, ତାର ପ୍ରବକ୍ତା ଭାବେ ସେ ସେହି ଆନ୍ଦୋଳନର ଅଗ୍ର ଭାବରେ ସ୍ଥାନ ଗ୍ରହଣ କରିଥିଲେ । ଗଞ୍ଜାମ ଜିଲ୍ଲାର ପାର୍ଟି ସଂପାଦକ ଭାବେ ସେ ଗଞ୍ଜାମ ଜିଲ୍ଲାରେ ଆମ ପାର୍ଟିରେ-ଯେଉଁ ସାଂଗଠନିକ ଭିତ୍ତି ପକାଇ ଯାଇଛନ୍ତି, ତାହା ଆଜି ରାଜ୍ୟରେ ଶ୍ରେଷ୍ଠ ଜିଲ୍ଲା ପାର୍ଟି ଭାବେ ସ୍ଥାନ ଗ୍ରହଣ କରିଛି ଓ ରାଜ୍ୟ ପାର୍ଟିର ସଂପାଦକ ଭାବେ ସେ ଦୀର୍ଘ ୧୬ ବର୍ଷ ନେତୃତ୍ୱ ନେଇ ଆସିଥିଲେ । ସେହି ସମୟ ଭିତରେ ସେ ଓଡିଶାର ପ୍ରତ୍ୟେକ ଜନଆନ୍ଦୋଳନରେ ନିଜକୁ ଓ ପାର୍ଟିକୁ ସାମିଲ କରି ଆସିଥିଲେ.। ଓଡିଶାର ବିଧାନସଭାର ସଭ୍ୟ ଭାବେ ସେ ୨ ଥର ନିର୍ବାଚିତ ହୋଇଥିଲେ ଓ ବିଧାନସଭାରେ, ଓଡିଶାର ବିଭିନ୍ନ ସମସ୍ୟା ଉପରେ ତାଙ୍କର ଯୁକ୍ତି ଆଗାମୀ ବଂଶଧରଙ୍କ ପାଇଁ ସଙ୍କେତ ଦେବ ବିଧାନସଭାରେ, ମେହନତକାରୀ, ଜନସାଧାରଣଙ୍କ ସ୍ୱାର୍ଥର ପ୍ରହରୀ ଭାବେ, ସେ ନିଜର ବିଶେଷତ୍ୱ ପ୍ରତିପାଦନ କରିଥିଲେ । ଓଡିଶାରେ ପାର୍ଟି ଗଠନରେ ତାଙ୍କର ଥିଲା ଜୀବନର ସର୍ବଶ୍ରେଷ୍ଠ ଅବଦାନ, ପାର୍ଟିର ନେତା ଭାବେ ସେ ପାର୍ଟିର ଏକତାକୁ ରକ୍ଷା କରିବା ପାଇଁ ବହୁ ସମାଲୋଚନାର ଶରବ୍ୟ ହୋଇଥିଲେ ମଧ୍ୟ ପାର୍ଟିର ଏକତା ରକ୍ଷା କରିବା ଦ୍ୱାରା ନିଜର ସାମର୍ଥ୍ୟ ପ୍ରକାଶ କରି ଯାଇଛନ୍ତି ।

ଛାତ୍ର ଜୀବନରୁ ଜୀବନ ଶେଷ ପର୍ଯ୍ୟନ୍ତ ଦୁଃଖ ଦୈନ୍ୟ, ଅନାହାର ମଧ୍ୟରେ ସେ ଦବି ଯାଇନାହାନ୍ତି କି, କୌଣସି ଦିନ ପାର୍ଟିର ଭବିଷ୍ୟତ ଉପରେ ସନ୍ଦେହ ପ୍ରକାଶ କରି ନାହାନ୍ତି ।

ତାଙ୍କର ସାଥୀମାନଙ୍କ ସହିତ ସଂପର୍କ ଥିଲା ଅତ୍ୟନ୍ତ ସାଥୀ ସୁଲଭ । ସେ ଓ ମୁଁ ପ୍ରାୟ ଏକା ସମୟରେ ପାର୍ଟିରେ ଯୋଗ ଦେଇଥିଲୁ । ତାଙ୍କ ସହିତ ବହୁ ସମୟରେ ମୋର ମତଭେଦ ଘଟିଥିଲେ ମଧ୍ୟ ଆମ ଉଭୟଙ୍କର ପରସ୍ପର ପ୍ରତି ଥିଲା ଘନିଷ୍ଠ ମମତା ଓ ସ୍ନେହ । କମ୍ୟୁନିଷ୍ଟ ଜୀବନରେ ଏହି ବିଶେଷତ୍ୱ ଥିଲା ଆମ ଉଭୟଙ୍କର ସମ୍ବଳ ।

ଶାରୀରିକ ଅସୁସ୍ଥତା କାରଣରୁ ସେ ନିଜ ଇଚ୍ଛାରେ ଯେତେବେଳେ ପାର୍ଟି ସଂପାଦକ ଦାୟିତ୍ୱରୁ ଅବ୍ୟାହତି ନେଲେ ଓ ମୁଁ ସଂପାଦକ ନିର୍ବାଚିତ ହେଲି, ସେ ସବୁବେଳେ ମୋତେ ପରାମର୍ଶ ଖାଲି ଦେଉ ନଥିଲେ, ଅସୁସ୍ଥତା ସତ୍ତ୍ୱେ ମୋତେ ସାହାଯ୍ୟ କରିବା ପାଇଁ ସବୁବେଳେ ଚେଷ୍ଟା କରୁଥିଲେ । ତାଙ୍କ ବିୟୋଗରେ ମୁଁ ଆଜି ନିଜକୁ ଅସହାୟ ମନେ କରୁଛି ।

ତାଙ୍କର ଆକସ୍ମିକ ବିୟୋଗ ଫଳରେ ଆମ ପାର୍ଟିର ଯେଉଁ ଅପୂରଣୀୟ କ୍ଷତି ଘଟିଛି, ତାହାକୁ ପୂରଣ କରିବା, ତାଙ୍କର ଅପୂରଣୀୟ କାର୍ଯ୍ୟକୁ ପୂରଣ କରିବା, ଆଜି ଆମର ତାଙ୍କ ପ୍ରତି ହେବ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

ଭଗବତୀ ଭବନ
୨୩ ନଭେମ୍ବର ୧୯୯୧

# ଶ୍ରଦ୍ଧାଞ୍ଜଳି

ସ୍ୱର୍ଗୀୟ ଶ୍ରୀ ସଦାନନ୍ଦ ମହାନ୍ତିଙ୍କ ଗୁଣାବଳୀ ସ୍ମରଣାର୍ଥେ ଗୋଟିଏ ସ୍ମରଣିକା ପ୍ରକାଶ କରିବା ଅତ୍ୟନ୍ତ ସମୁଚିନ । ସଦାନନ୍ଦ ବାବୁ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ଥିଲେ । ଚଳିତ ମାସ ୧୪ ତାରିଖ ଦିନ ତାଙ୍କର ଅସୁସ୍ଥତା କଥା ଜାଣି ମୁଁ ଭୁବନେଶ୍ୱର ହସ୍ପିଟାଲକୁ ଯାଇଥିଲି । ମୁଁ ତାଙ୍କୁ ଦେଖିଲି, ଶଯ୍ୟାଶାୟୀ ସଦାନନ୍ଦ ବାବୁ ମୋର ହାତକୁ ଧରି ପକାଇଲେ । ଲୋକନାଥ ବାବୁଙ୍କ ଠାରୁ ଜାଣିଲି ଯେ ତାଙ୍କୁ କଟକ ବଡ ଡାକ୍ତରଖାନାକୁ ନେବାକୁ ଆବଶ୍ୟକ ପଡିଥିଲା । ହସ୍ପିଟାଲରୁ ମୁଁ ଫେରି ଆସିଲି, ମାତ୍ର ମୁଁ ଜାଣି ନଥିଲି ଯେ, ଏତେ ଶୀଘ୍ର ସେ ସମସ୍ତଙ୍କୁ ଛାଡି ଚାଲିଯିବେ । ତାଙ୍କର ଅକାଳ ବିୟୋଗ ଆମ ରାଜ୍ୟ ପକ୍ଷରେ ଗୋଟିଏ ଅପୂରଣୀୟ କ୍ଷତି । ସଦାନନ୍ଦ ବାବୁଙ୍କୁ ମୁଁ ପ୍ରଥମେ ଦେଖେ, ମୋର ବନ୍ଧୁ ସ୍ୱର୍ଗୀୟ ଶ୍ରୀ ବିଜୟ ଚନ୍ଦ୍ର ଦାସଙ୍କ ପାଖରେ । ସେ ଜଣେ ଉତ୍କୃଷ୍ଟ ସମାଜସେବୀ ଥିଲେ । ସେ ବିଶେଷ କରି ଦଳିତ ଓ ଶୋଷିତ ବ୍ୟକ୍ତି ଓ ଶ୍ରମିକ ମାନଙ୍କର ପରମ ବନ୍ଧୁ ଥିଲେ ଓ ସେଥିପାଇଁ ସେ ନିର୍ଯାତିତ ହୋଇଥିଲେ । ଜଣେ ବିଧାନସଭା ସଭ୍ୟ ହିସାବରେ ସେ ତାଙ୍କର କାର୍ଯ୍ୟ ସୁଚାରୁ ରୂପେ କରୁଥିଲେ । ଚାଷୀ, ଶ୍ରମିକ ଓ ଦଳିତ ଶ୍ରେଣୀର ସ୍ୱାର୍ଥ ରକ୍ଷା ପାଇଁ ସେ ଜଣେ ଜାଗ୍ରତ ପ୍ରହରୀ ଥିଲେ । ସେସବୁ ଶ୍ରେଣୀ ଉପରେ କ୍ଷତିକାରକ କୌଣସି ପ୍ରସ୍ତାବ ସରକାରଙ୍କ ପକ୍ଷରୁ ଆସିଲେ ସେ ବିଧାନସଭାରେ ତାର ତୀବ୍ର ସମାଲୋଚନା କରୁଥିଲେ । ଭାରତୀୟ କମ୍ୟୁନିଷ୍ଟ ପାର୍ଟିରେ ସେ ଜଣେ ବଳିଷ୍ଠ ନେତା ଥିଲେ । କେବଳ କମ୍ୟୁନିଷ୍ଟ ପାର୍ଟି ନୁହେଁ ସମଗ୍ର ଓଡ଼ିଶା ଜଣେ ସଚ୍ଚୋଟ ଦେଶପ୍ରେମୀ ଓ ଦକ୍ଷ ବ୍ୟବସ୍ଥାପକ ଓ ବିପ୍ଳବୀ ସମାଜସେବୀ ହରାଇଛି । ସଦାନନ୍ଦ ବାବୁଙ୍କର ଆତ୍ମାର ସଦ୍‌ଗତି କାମନା କରିବା ସଙ୍ଗେ ସଙ୍ଗେ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

**ନୀଳମଣି ରାଉତରାୟ**
୨୧.୧୧.୯୧

# ସପ୍ତରଥିଙ୍କ ଆକ୍ରମଣର ଚକ୍ରବ୍ୟୂହ

ଜନାର୍ଦ୍ଦନ ପତି

ନଭେମ୍ବର ୨୦ ତାରିଖ, ରାତି ପ୍ରାୟ ୮ଟା ହେବ । ସିପିଆଇ. ଅଫିସରୁ କମ୍ରେଡ ପ୍ରଫୁଲ୍ଲ ଟେଲିଫୋନ୍ ଯୋଗେ ଜଣାଇଲେ ଯେ ସଦାନନ୍ଦ ବାବୁଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏକ ସ୍ମରଣିକା ପ୍ରକାଶ ପାଇବ ଆଗାମୀ ୨୭ ତାରିଖରେ । ଆଉ ଏହି ସ୍ମରଣିକା ପାଇଁ ଏକ ଲେଖା ପଠାଇବାକୁ । ନାହିଁ କରିବାର ଚାରା ନଥିଲା । କାରଣ ସଦାନନ୍ଦ ବାବୁଙ୍କ ପ୍ରତି ମୋର ଏକ ଅହେତୁକ ସଦିଚ୍ଛା ଥିଲା, ଭଲ ପାଇବା ଥିଲା ।

ଗତ ୧୬ ତାରିଖ ଦିନ ବାଲେଶ୍ୱରରୁ ରାତିରେ ଫେରି ଶୁଣିଲି, ସଦାନନ୍ଦ ବାବୁଙ୍କର ଦେହାନ୍ତ ହୋଇଯାଇଛି । ଏକ ଦୀର୍ଘ ନିଃଶ୍ୱାସ ତ୍ୟାଗ କଲି । ପୁଣି ଶୁଣିଲି ତାଙ୍କର ମର ଶରୀରକୁ ତା ପରଦିନ ପୁରୀ ସ୍ୱର୍ଗଦ୍ୱାରକୁ ନେଇଯାଇଛନ୍ତି । ଅବଶ୍ୟ ସଦାନନ୍ଦ ବାବୁ ବଞ୍ଚିଥିବା ବେଳେ ଏସବୁ ଘଟଣାକୁ ବିରୋଧ କରିଛନ୍ତି । ତେବେ ଯାହାହେଉ, ସଦାନନ୍ଦ ବାବୁଙ୍କ ମୃତ୍ୟୁ ଓଡ଼ିଶାରେ କମ୍ୟୁନିଷ୍ଟ ଆନ୍ଦୋଳନରେ ଏକ ଶୂନ୍ୟସ୍ଥାନ ରଖିଯିବ ।

ସଦାନନ୍ଦ ବାବୁ ଚାଲିଗଲେ । ଯେତେବେଳେ ପୃଥିବୀ ବ୍ୟାପୀ କମ୍ୟୁନିଷ୍ଟ ମତବାଦ ଓ ଆଦର୍ଶ ଉପରେ ଆସିଛି ତୀବ୍ର ଆକ୍ରମଣ । ସେ ଆକ୍ରମଣକୁ ସାମ୍ନା କରିବାକୁ ସେ ରହିପାରିଲେ ନାହିଁ । ଆଜି ପୃଥିବୀର ସର୍ବ ପ୍ରଥମ ସମାଜବାଦୀ ଦେଶରେ, କମ୍ୟୁନିଷ୍ଟ ପାର୍ଟି ହୋଇଛି ବେଆଇନ୍, କମ୍ୟୁନିଷ୍ଟ ପାର୍ଟିର ଖବର କାଗଜ ନିଷିଦ୍ଧ କରାଯାଇଛି ଓ ପାର୍ଟି ସମ୍ପତ୍ତି ବ୍ୟାଜାପ୍ତି କରାହୋଇଛି । ଏତେ ପରେ ବି କିଏ କିଏ କହୁଛନ୍ତି, ଏଇଟା କୁଆଡେ ସମାଜବାଦକୁ ରକ୍ଷା କରିବାର ପ୍ରକୃତ ରାସ୍ତା ।

ରୁଷିଆ ମାଟିରେ ଅଧିକ ସମାଜବାଦ, ଅଧିକ ଗଣତନ୍ତ୍ର କାଏମ୍ କରିବାକୁ କହି ସେ ଦେଶରେ ପୁଞ୍ଜିବାଦ କାଏମ୍ କଲେଣି ଓ ଗଣତନ୍ତ୍ର କଥା କହି, କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ୍ କଲେଣି, କମ୍ୟୁନିଷ୍ଟ ପାର୍ଟିର ଜେନେରାଲ ସେକ୍ରେଟାରୀ ହୋଇ କମ୍ୟୁନିଷ୍ଟ ପାର୍ଟିକୁ ଧ୍ୱଂସ କଲେ ।

ମହାଭାରତ ଯୁଦ୍ଧରେ ସପ୍ତରଥିଙ୍କ ମିଳିତ ଆକ୍ରମଣ ଓ ଅଭିମନ୍ୟୁର ନିଧନ ଗଳ୍ପଟା ଆମ ପାଠକମାନେ ନିଶ୍ଚୟ ଜାଣିଥିବେ । ବିଂଶ ଶତାବ୍ଦୀରେ ଶେଷ ଦଶନ୍ଧିରେ "ଆମେରିକା-ଜାପାନ-ଜର୍ମାନ-ବ୍ରିଟେନ୍-ଫ୍ରାନ୍ସ-ଇଟାଲି-କାନାଡ଼ା" ଏହି ସାତଟି ଦେଶ ଆଜି ବିଶ୍ୱବାସୀଙ୍କୁ ଅଭିମନ୍ୟୁ କରିବାକୁ ବାହାରିଛନ୍ତି । ମହାଭାରତର ଇତିହାସ ଏହି ଘଟଣାରେ କି ଶିକ୍ଷା ଦେଇଛି ? ସପ୍ତରଥି ପରାଜୟ ବରଣ କରିଛନ୍ତି । କିନ୍ତୁ ସେଇଟା ଖୁବ୍ ସହଜ ନଥିଲା ।

ଅଭିମନ୍ୟୁ ନିଧନ ହୋଇଥିଲା ସତ, କିନ୍ତୁ କୌରବ ସେନାର ବିଜୟ ଘଟି ନଥିଲା । ଆଜିକାର ଘଟଣାବଳୀ ଦେଖିଲେ ବେଶ୍ ବୁଝାଯାଏ ଯେ ସୋଭିଏତ୍ ୟୁନିଅନ୍ ସମେତ ପୂର୍ବ ୟୁରୋପର ସମାଜବାଦୀ ରାଷ୍ଟ୍ର ବ୍ୟବସ୍ଥା ଧ୍ୱଂସ ହୋଇଗଲା ପରେ ଏହି ସପ୍ତରଥିମାନେ ଆନନ୍ଦରେ ଫାଟି ପଡୁଛନ୍ତି । ସମସ୍ତ ଦୁନିଆ ଆଜି ସେମାନଙ୍କ କବଳରେ । ଇରାକ୍‌ରେ ନିରୀହ ବୃଦ୍ଧ, ବୃଦ୍ଧା, ମହିଳା ଓ ଶିଶୁମାନଙ୍କୁ ବିନା କାରଣରେ ହତ୍ୟା କରି, ନିଜକୁ ବିଜୟୀ ବୋଲି ଏଇ ଦେଶମାନେ ବୁଶ୍ ସାହେବଙ୍କ ନେତୃତ୍ୱରେ ଗର୍ବବୋଧ କରୁଥିଲେ । ପଶ୍ଚିମ ଗୋଲାର୍ଦ୍ଧରେ କ୍ଷୁଦ୍ର ଦ୍ୱୀପ, ସମାଜବାଦୀ କ୍ୟୁବାକୁ ଧ୍ୱଂସ କରିବା ପାଇଁ ଆମେରିକା ତିନି ଦଶନ୍ଧି ଧରି ଉଦ୍ୟମ ଚଳାଇ ରଖିଛି । ସୋଭିଏତ୍ ୟୁନିଅନ୍‌ରେ ସମାଜବାଦର ବିପର୍ଯ୍ୟୟ ପରେ ଆମେରିକା କ୍ୟୁବା ବିରୁଦ୍ଧରେ ରଣ ହୁଙ୍କାର ଦେଉଛି ଓ କ୍ୟୁବାର ଘରେ ଘରେ ଆଜି ପ୍ରତିରକ୍ଷା ପାଇଁ ପ୍ରସ୍ତୁତି ଚାଲିଛି ।

ଭାରତ ସମେତ ତୃତୀୟ ବିଶ୍ୱର ଦେଶମାନଙ୍କର ଅବସ୍ଥା କହିଲେ ନସରେ । ସୋଭିଏତ୍ ୟୁନିଅନ୍‌ରେ ସମାଜବାଦର ପତନ ପରେ ଯେଉଁମାନେ ଖୁସି ହେଉଥିଲେ, ସେମାନେ ଆଖି ଖୋଲି ଦେଖିବା ଦରକାର, ଆଜି ଜାତିସଂଘ ଅଧିବେଶନରେ ସୋଭିଏତ୍ ରୁଷ ଭାରତ ବିରୁଦ୍ଧରେ ପାକିସ୍ତାନ ପ୍ରସ୍ତାବ ସପକ୍ଷରେ ଭୋଟ ଦେଇଛି । କାଶ୍ମୀର ପ୍ରଶ୍ନ ଜାତି ସଂଘରେ ଉଠିଲେ ସୋଭିଏତ୍ ରୁଷ ବି ଆମେରିକା ଓ ପାକିସ୍ତାନ ପକ୍ଷରେ ରହିପାରେ । ତେବେ କମ୍ୟୁନିଷ୍ଟ ପାର୍ଟି ଶାସନାଧୀନ ସୋଭିଏତ୍ ୟୁନିଅନ୍ ଆମ ଦେଶ ପ୍ରତି କ'ଣ କରୁଥିଲା ଓ କମ୍ୟୁନିଷ୍ଟ ବିରୋଧୀ ଶକ୍ତି ଶାସନାଧୀନ ସୋଭିଏତ୍ ୟୁନିଅନ୍ ଆମ ଦେଶ ପାଇଁ କ'ଣ କରିବା ଆରମ୍ଭ କଲେଣି ? ଆମର ତଥାକଥିତ ଜାତୀୟତାବାଦୀ (?) ଓ ଦେଶପ୍ରେମୀ (?) ମାନେ କ'ଣ ଏ ବିଷୟରେ ମୁଣ୍ଡ ଖେଳେଇଲେଣି ? ସେମାନେ ଭାବୁଛନ୍ତି, ଆମେରିକା ଓ ତାର ବନ୍ଧୁ ଦେଶ, ସପ୍ତରଥିମାନେ ଆମକୁ ରକ୍ଷା କରିବେ । ତା ହେବ ନାହିଁ । ଏହି ଘୃଣ୍ୟ ସପ୍ତରଥୀଙ୍କ ଜଘନ୍ୟ ଚକ୍ରବ୍ୟୂହ ଭିତରୁ ମୁକ୍ତି ପାଇବା ପାଇଁ ସମଗ୍ର ଦୁନିଆରେ ଶୋଷିତ ଜାତିମାନେ ଏକଜୁଟ ହେବେ ।

ସଦାନନ୍ଦ ବାବୁ ବଞ୍ଚିଥିଲେ, ଆମ ରାଜ୍ୟରେ ଏହି ଶକ୍ତିମାନଙ୍କୁ ପ୍ରେରଣା ଦେଇଥାଆନ୍ତେ । ସେ ବଞ୍ଚିଥିବା ବେଳେ ଏହି ମତବାଦୀମାନଙ୍କୁ ପ୍ରେରଣା ଦେଉଥିଲେ । ତାଙ୍କ ସ୍ମୃତି ଚାରଣ ବେଳେ, ଆମେ ଏତିକି କହୁଛୁ ଯେ, ଆମେ ତାଙ୍କ କଥା ମନେ ରଖିଛୁ ଓ ସମୟ ଯେତେ ସଙ୍କଟମୟ ହେବ ତାଙ୍କ ପ୍ରେରଣା ବେଶୀ ବେଶୀ ମନେ ପଡ଼ିବ ।

ଆଗାମୀ ବଂଶଧର ନୂଆ ଯୁଗ ରଚନା କରିବ । ସମାଜରୁ ଶେଷରେ ଶୋଷଣ ଓ ଅତ୍ୟାଚାରର ବିଲୁପ୍ତି ଘଟିବ ।

ସଦାନନ୍ଦ ବାବୁ ତ ଏଇଥିରେ ହିଁ ବିଶ୍ୱାସ କରୁଥିଲେ । ●

# ଲୋହିତ ପ୍ରଣିପାତ

ରବି ସିଂ

ଆମେ ଯେଉଁମାନେ ସାମଜିକ ବିପ୍ଲବରେ ବିଶ୍ୱାସ କରୁ, ଏବଂ ସେଥିପାଇଁ ମରଣପଣ ସଂଗ୍ରାମରେ ବ୍ୟାପୃତ, ଆମେ ଜାଣୁ ଏବଂ ଏଇଟା ବୈଜ୍ଞାନିକ ସତ୍ୟ ଯେ ସମଗ୍ର ବିଶ୍ୱମାନବ ସମାଜ ଶ୍ରେଣୀବିଭକ୍ତ ଏବଂ ଶ୍ରେଣୀ ଧର୍ଷିତ ମାନବ ସମାଜ । ଏଠାରେ ସବୁ କିଛି ଦୁଇ ଭାଗରେ ବିଭକ୍ତ, ଏପରିକି ପ୍ରେମ ଏବଂ ମୃତ୍ୟୁ ମଧ୍ୟ । ବିପ୍ଳବ ଶାସ୍ତ୍ରର ବିଧାନ କୁହେ ମୃତ୍ୟୁ ଯଦିଓ ରାତ୍ରିର ଅନ୍ଧାର ପରି ଅବଧାରିତ, ତୁମକୁ ସ୍ଥିର କରିବାକୁ ହେବ, ତୁମେ କେଉଁ ଧରଣର ମୃତ୍ୟୁକୁ ବରଣ କରିବ ? ଦୁଇ ପ୍ରକାର ମୃତ୍ୟୁ ଭିତରୁ ଗୋଟିଏ ମୃତ୍ୟୁ ହେଉଛି ଚଢେଇ ପର ପରି ହାଲୁକା ଏବଂ ଭାସମାନ । ସେ ମୃତ୍ୟୁ ହେଉଛି କଳୁଷିତ ମୃତ୍ୟୁ, ସେ ମୃତ୍ୟୁ ସହିତ ଜଡିତ ଅଛି ସମନ୍ୱୟ, ସାଲିସ, ପୁଞ୍ଜିବାଦ, ସାମ୍ରାଜ୍ୟବାଦ ଓ ଉପନିବେଶବାଦର ଦଲାଲି, ଅନ୍ୟ ମୃତ୍ୟୁଟି ହେଉଛି ବୈପ୍ଳବିକ ମୃତ୍ୟୁ । ତାହା ହେଉଛି ମହାମେରୁ କପିଳାସ ପରି ଉତ୍ତୁଙ୍ଗ, ଓଜନଦାର । ସେ ମୃତ୍ୟୁ ସହିତ ଜଡିତ ଅଛି ସଂଗ୍ରାମ, ସଂଘାତ, ତ୍ୟାଗ, ତପସ୍ୟା ଓ ବେସାଲିସ ଶ୍ରେଣୀ ଯୁଦ୍ଧ ।

ଏ ଦ୍ୱିତୀୟ ଶ୍ରେଣୀର ମୃତ୍ୟୁ ସମସ୍ତଙ୍କ ଭାଗ୍ୟରେ ଯୁଟେ ନାହିଁ, ଯେଉଁମାନଙ୍କ ଭାଗରେ ଯୁଟେ ସେମାନେ ଇତିହାସର ଗତାନୁଗତିକ ଧାରା ବିରୋଧରେ ଉର୍ଦ୍ଧ୍ୱବାହୁ ମନିଷ । ଓଡିଶାର ବାମପନ୍ଥୀ ରାଜନୈତିକ ଆନ୍ଦୋଳନ ଏବଂ ରକ୍ତକ୍ଷୟୀ ସଂଗ୍ରାମ ଭିତରେ ଯେଉଁମାନେ ନିଜକୁ ବିପ୍ଳବୀ, ଆବେଗ ଓ ଉଦ୍ଦୀପନାରେ ଅତୀତରେ ସାମିଲ କରିଥିଲେ ସେମାନେ ମୋର ପୂର୍ବ ସୂରୀ । ସେହିମାନଙ୍କ ଭିତରୁ କମ୍ରେଡ ସଦାନନ୍ଦ ମହାନ୍ତି ଅନ୍ୟତମ । ସଦାନନ୍ଦ ବାବୁ ବ୍ୟକ୍ତିଗତ ଭାବରେ ମୋର ଥିଲେ ଅତ୍ୟନ୍ତ ଘନିଷ୍ଠ ଆଉ ଜଣେ ବିପ୍ଳବୀ ଆତ୍ମୀୟ । ତାଙ୍କ ସହିତ ସ୍ମୃତି ଅନେକ ! ମୋର ମାର୍କ୍ସବାଦ-ଲେନିନ୍‌ବାଦ ସହିତ ପରିଚୟର ପ୍ରାକ୍ କାଳରେ ଯେଉଁମାନେ ମୋ ଆଗରେ ସୂର୍ଯ୍ୟବତ୍ ପ୍ରତିଭାତ ହୋଇଥିଲେ ସେମାନଙ୍କ ଭିତରୁ ସାଥୀ ଶରତ ପଟ୍ଟନାୟକ ଓ ସଦାନନ୍ଦ ବାବୁ ଅନ୍ୟତମ । ସଦାନନ୍ଦ ବାବୁ ଏତେ ଶୀଘ୍ର ଜୀବନ ପାଖରୁ ବିଦାୟ ନେବେ ଏହା ମୋର କଳ୍ପନାତୀତ ଥିଲା । କଟକ ଟାଉନ ହଲରେ ସାଥୀ ଶରତ ପଟ୍ଟନାୟକ ଶ୍ରାଦ୍ଧ ସଭା ଦିନ ତାଙ୍କ ସହିତ ମୋର ଶେଷ ସାକ୍ଷାତ । ସଭା ପୂର୍ବରୁ ବହୁ ସମୟ ବସି ଏକାନ୍ତରେ ମୋର ତାଙ୍କ ସହିତ ଅନ୍ତରଙ୍ଗ ଆଳାପ ହୋଇଥିଲା । ସେ ମୋତେ ସେଦିନ ଯାହା କହିଥିଲେ ତାର ପ୍ରତିଧ୍ୱନୀ ଆଜି ବି ମୋ କାନ ପାଖରେ ଅନୁରଣିତ ହେଉଛି । ସେ କହିଥିଲେ "ରବିବାବୁ ! ଆମ ଦିନ କାଳ සରିଆସିଲାଣି । ତୁମକୁ ବୈପ୍ଳବିକ ଉତରାଧିକାର କେହି ଦେଇ ନାହିଁ । ତମେ ଆପଣ ଛାଏଁ ମନକୁ ମନ ତାହା ନିଜେ ଗ୍ରହଣ କରିଛ । ତୁମର ତୀବ୍ର ଜୀବନ ସଂଗ୍ରାମ ସହିତ ବିପ୍ଳବୀ ଦୃଷ୍ଟି ଭଙ୍ଗୀ ଆଧୁନିକ ଓଡିଆ ସାହିତ୍ୟରେ ମାର୍କ୍ସବାଦୀ ଧାରାକୁ କେବଳ ଆଗେଇ ନେଇନି, ନିରାପଦ ରଖିଛି । ମୁଁ କବି ନୁହେଁ, ତୁମର ଜଣେ ବିଶ୍ୱସ୍ତ ପାଠକ । ବର୍ତ୍ତମାନ ସାରା ଦୁନିଆରେ ସମାଜବାଦୀ ଶିବିରରେ ଯାହା ଘଟୁଛି ସେଥିରେ ଆମେ ସବୁ ହତବାକ୍ ହୋଇଯାଇଛୁ । ପୂର୍ବର ସେ ସାମର୍ଥ୍ୟ ଓ ଶକ୍ତି ଆଉ ନାହିଁ ।" ଇତ୍ୟାଦି ଇତ୍ୟାଦି ବହୁତ କଥା ଆଲୋଚନା ଛଳରେ ସେ ସଂପ୍ରତି ରୁଷିଆରେ ଗୋର୍ବାଚୋଭଙ୍କ "ପେରେସ୍ତ୍ରୋଇକା ଓ ଗ୍ଲାସନୋସ୍ତ"କୁ ଅତ୍ୟନ୍ତ କ୍ଷୋଭର ସହିତ ଧିକ୍କାର କରି ତାହା ଯେ ଧନତନ୍ତ୍ରର ପୁନଶ୍ଚ ନବକଳେବର, ମୋର ଏହି ମତ ସହିତ ସମ୍ପୂର୍ଣ୍ଣ ଏକ ମତ ହୋଇଥିଲା । ମୁଁ ଲକ୍ଷ୍ୟ କରିଥିଲି ରୁଷିଆର ସାମ୍ପ୍ରତିକ ଘଟଣାବଳୀ ତାଙ୍କୁ ଗଭୀର ଆତ୍ମିକ ଧକ୍କା ଦେଇଛି, ଦେବାଟାତ ସ୍ୱାଭାବିକ !

ଇତିହାସର ରଥ ଚକ ଆଜି ଯେତେବେଳେ ପଛକୁ ବୁଲୁଛି, ସେତେବେଳେ ପ୍ରତିକ୍ରିୟା-ବାଦର ଲୋମଶ ହାତ ସାରା ଦୁନିଆରୁ ସତ୍ୟସେବୀ ବୀରବଂଶକୁ ସମୂଳେ ନିଶ୍ଚିହ୍ନ କରିବା ପାଇଁ ତାର ଘୃଣିତ ଅଭିଯାନକୁ ଜୋରଦାର କରିଛି । ଏଥିରେ ବିସ୍ମିତ ହେବାର କାରଣ ନାହିଁ- ଏହି କାରଣରୁ- ଜୟ-ପରାଜୟ, ପୁନଃବାର ଜୟ, ପୁନଃବାର ପରାଜୟ ଏହି ଦ୍ୱାନ୍ଦ୍ୱିକ ସରଣୀ ମଧ୍ୟରେ ମାନବ ମୁକ୍ତିର ଗତିପଥ । ଏହା ଅତୀତର ଅଭିଜ୍ଞତା ଓ ଅନୁଭୂତି । ନିଖିଳର ସମାଜବାଦୀ ଶିବିରର ଏହି ଦୁର୍ବିପାକ କାଳରେ ଯେଉଁ ବରିଷ୍ଠ କମ୍ରେଡମାନେ ଜଣକ ପରେ ଜଣେ ବିଦାୟ ନେଉଛନ୍ତି ତାହା ଏକ ଶୂନ୍ୟତା । ସେମାନେ ଆଉ କିଛି କାଳ ଜୀବିତ ରହିଥିଲେ ସେମାନଙ୍କ ସଂଗ୍ରାମୀକ ଅନୁଭୂତିରୁ ଆଜିର ବିପ୍ଳବୀ ଯୁବ ଗୋଷ୍ଠୀ ଯଥେଷ୍ଟ ପ୍ରେରଣା ପାଇଥାନ୍ତେ । କିନ୍ତୁ ତାହା ସମ୍ଭବ ହେଲା ନାହିଁ, ଏକ ସୁଖୀ ସୁନ୍ଦର ଶୋଷଣ ବିହୀନ ସାମ୍ୟବାଦୀ ପୃଥିବୀ ଏବଂ ଭାରତ ବର୍ଷର ମାନଚିତ୍ରର ଛବି ଯେଉଁମାନେ ଅଙ୍କନ କରି ଦାରୁଣ ତାପ ଦଗ୍ଧ ପଥରେ ଚାଲି ଚାଲି ଆଜି ଶେଷଥର ପାଇଁ ଜୀବନ ପାଖରୁ ବିଦାୟ ନେଲେ, କମ୍ରେଡ ସଦାନନ୍ଦ ମହାନ୍ତି ସେମାନଙ୍କ ପାଖରୁ ଜଣେ । ମୋର ଏକ ଅବଶୋଷ ରହିଗଲା, ମୁଁ ତାଙ୍କର ଶେଷ ଦର୍ଶନ କରିପାରିଲି ନାହିଁ ।

ତାଙ୍କର ବିଦୟରେ ମୁଁ ଗଭୀର ଭାବେ ମର୍ମାହତ । ତାଙ୍କର ସଂଗ୍ରାମସିକ୍ତ ଏବଂ ବିପ୍ଳବୀ ସ୍ମୃତି ନିକଟରେ ମୁଁ ମୋର ଲୋହିତ ପ୍ରଣାମ ଜଣାଉଛି ।

ଭଗବତୀ ଭବନ

୨୧ ନଭେମ୍ବର, ମଧ୍ୟାହ୍ନ

# ସ୍ମରଣୀୟ ସଦାନନ୍ଦ

**ଗଙ୍ଗାଧର ପାଇକରାୟ**
**ସଭାପତି, ରାଜ୍ୟ କୃଷକ ସଭା**

ଯୋଦ୍ଧା ସଦାନନ୍ଦଙ୍କୁ ଦେଖିଲି ୧୯୪୪-୪୫ରେ ଗଞ୍ଜାମ, ବହ୍ମପୁର ପ୍ରଭୃତି ସ୍ଥାନମାନଙ୍କରେ କୃଷକ ସମ୍ମିଳନୀ ଓ ଯୁବ ସମ୍ମିଳନୀମାନଙ୍କରେ । ଆସ୍କା କୃଷକ ସମ୍ମିଳନୀରେ ସେ ଜଣେ ସ୍ୱେଚ୍ଛାସେବୀ ଭାବରେ ରହି ଶୃଙ୍ଖଳାର ସହ ହଜାର ହଜାର ଉପସ୍ଥିତ ଜନସାଧାରଣଙ୍କୁ ବସାଇବା ଓ ପଟୁଆରକୁ ଶୃଙ୍ଖଳିତ କରିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କୁ ପିଇବା ପାଣି ଯୋଗାଉଥିଲେ । ହଜାର ହଜାର କୃଷକ ଗଞ୍ଜାମ ଜିଲ୍ଲାର ସମସ୍ତ ପ୍ରାନ୍ତରରୁ ଆସିଥିଲେ ଏବଂ ଓଡ଼ିଶାରୁ ଶହ ଶହ କର୍ମୀ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ଆସ୍କା ହାଇସ୍କୁଲ ଗୃହରେ ଅଭ୍ୟର୍ଥନା କମିଟି ଓ ରାଜ୍ୟ କୃଷକ ସଭା ବୈଠକ, ନୀଳଗିରି ପ୍ରଭୃତିରୁ ଆସିଥିବା ସାଂସ୍କୃତିକ ଦଳ ଛଉ ନାଚ ପ୍ରଭୃତି ହେଉଥିଲା । ସେହି ସ୍କୁଲଟି ସ୍ୱାଧୀନତା ସଂଗ୍ରାମୀ ଦିବାକର ପଟ୍ଟନାୟକଙ୍କ ସହଯୋଗରେ ମିଳିଥିଲା । ସମଗ୍ର ଆସ୍କା ସହରଟି ହଜାର ହଜାର କୃଷକ ଯୁବକ ଛାତ୍ରମାନଙ୍କ ପଟୁଆରରେ ଉଚ୍ଛୁଳି ପଡୁଥିଲା । ବିପ୍ଳବୀ ସଦାନନ୍ଦ ଓ ତାଙ୍କର ସାଥୀମାନେ ଆନନ୍ଦରେ ସେହି ବିରାଟ ପଟୁଆରକୁ ଶୃଙ୍ଖଳିତ କରି ପରିଚାଳିତ କରୁଥିଲେ ।

୧୯୪୬ ମସିହା ଏପ୍ରିଲ, ମଇ ମାସରେ ସେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେଲେ । ସେହିଦିନ ଠାରୁ ଗଞ୍ଜାମ ଜିଲ୍ଲାର କୃଷକ, ଯୁବକ, ଛାତ୍ରମାନଙ୍କର ସଂଗଠିତ ଆନ୍ଦୋଳନ ଚଳାଇଲେ । ଜିଲ୍ଲାର କମ୍ୟୁନିଷ୍ଟ ପାର୍ଟିକୁ ଶକ୍ତିଶାଳୀ କରିବା ପାଇଁ ଦୃଢ଼ ସଂଗଠନ ଗଢ଼ି ତୋଳିଥିଲେ । ତାଙ୍କର ଏହି ଆନ୍ଦୋଳନର ସଂଗଠନକୁ ବହୁ ପୁରୁଖା ସାଥୀ ସ୍ୱର୍ଗୀୟ ଗୋବିନ୍ଦ ପ୍ରଧାନ, ବିଜୟ ଦାସ, ହରିହର ଦାସ, ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ, ବିଶ୍ୱନାଥ ସାହୁ ପ୍ରଭୃତିଙ୍କର ଦାନ ଅତୁଳନୀୟ । ତାଙ୍କର ଏହି ଶ୍ରମ ଯୋଗୁଁ ସଂଗଠନ ଦୃଢ଼ ହୋଇଥିଲା ଓ ସେ ଗଞ୍ଜାମ ଜିଲ୍ଲାର ସେକ୍ରେଟାରୀ ରୂପେ ନିର୍ବାଚିତ ହୋଇଥିଲେ । ଗଞ୍ଜାମ ଜିଲ୍ଲା ସାଥୀମାନଙ୍କର ଉତ୍ସାହ ଓ ପ୍ରେରଣା ପାଇଁ ସେ ଜିଲ୍ଲା ସେକ୍ରେଟାରୀ ଥାଇ ରାଜ୍ୟର କମ୍ୟୁନିଷ୍ଟ ପାର୍ଟିକୁ ଶକ୍ତିଶାଳୀ କରିବେ ବୋଲି ଏହି ଆଶା ବିଶ୍ୱାସରେ ରାଜ୍ୟ ସଂପାଦକ ରହିଲେ । ସଂପାଦକ ଭାବରେ ଓ ଜଣେ ନେତୃସ୍ଥାନୀୟ କମ୍ୟୁନିଷ୍ଟ ହିସାବରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତକୁ ଯାଇ କମ୍ୟୁନିଷ୍ଟ ଆନ୍ଦୋଳନଗୁଡ଼ିକୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ସଂଗଠନକୁ ଦୃଢ଼ କରିବାରେ ସାହାଯ୍ୟ କରିଥିଲେ ।

ସେ ଦୁଇଥର ବିଧାନସଭାକୁ କବିସୂର୍ଯ୍ୟନଗର ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ । ବିଧାନସଭାରେ ଜନସାଧାରଣଙ୍କ ସ୍ୱାର୍ଥକୁ ରକ୍ଷା କରିବା ଲାଗି ସେ ସଂଗ୍ରାମ ଚଳାଇଥିଲେ । ତାଙ୍କର ବକ୍ତୃତା ବିଧାନସଭାରେ ସବୁ ଦଳଦ୍ୱାରା ପ୍ରଶଂସନୀୟ ହୋଇପାରୁଥିଲା । ଯେଉଁ ଅଞ୍ଚଳରେ ଚାଷୀ ଓ ଯୁବକମାନେ ସଂଗ୍ରାମ ଚଳାଇଛନ୍ତି, ସେଠାକୁ ଆନନ୍ଦର ସହ ଏକ ମିନିଟ୍ ଅପେକ୍ଷା ନକରି ଅଣ୍ଟା ଭିଡ଼ି ବାହାରୁଥିଲେ । ପୁରୀ ଜିଲ୍ଲାର ଧଳା ପଥର କଟକ ଜିଲ୍ଲାର ବୈଦେଶ୍ୱର ଚାରି ଛକ ପ୍ରଭୃତି ସ୍ଥାନମାନଙ୍କରେ ଚାଲୁଥିବା କୃଷକ ଶ୍ରମିକ ଆନ୍ଦୋଳନକୁ ଯଥା ଯେଉଁ ଗାଁ ମାନଙ୍କରେ ପଡ଼ିଆ ଜମିରେ ଛୋଟ ଚାଷୀ ମୂଲିଆ ସାମାନ୍ୟ ପଇସା ନେଇ କାଜୁ ବଗିଚା ସୃଷ୍ଟି କରିଛନ୍ତି, ସେହିମାନେ ସେହି ଜମିର ମାଲିକ ହୁଅନ୍ତୁ, ଏଇଥି ପାଇଁ ବାଙ୍କୀ ସବ୍‌ଡିଭିଜନ ଓ ଖୋର୍ଦ୍ଧା ସବ୍‌ଡିଭିଜନର ୬୦ ଗୋଟି ଗ୍ରାମରେ ଚାଲିଥିବା ଲଢ଼େଇର ସଭାକୁ ଯାଇ ଆଦିବାସୀ ଭୂମିହୀନ ଓ ଚାଷୀମାନଙ୍କୁ ଉତ୍ସାହିତ କରୁଥିଲେ । ଓଡ଼ିଶାର ଯେଉଁ ଯେଉଁ ଅଞ୍ଚଳରେ ଶ୍ରମିକ, ଯୁବକ ସଂଗ୍ରାମ କରିଛନ୍ତି, ସେଠାକୁ ସେ ଯିବାକୁ ପଛାଇ ନାହାନ୍ତି । ଦୁଃଖର କଥା, ସେ ଏଇ ନଭେମ୍ବରରେ ଅସୁସ୍ଥ ହୋଇପଡ଼ିଲେ । ଭୁବନେଶ୍ୱର ଡାକ୍ତରଖାନାରେ ଚିକିତ୍ସିତ ହେଲେ । ୧୨ ତାରିଖ ସନ୍ଧ୍ୟାରେ କିଛି ସମୟ ତାଙ୍କ ଶେଯ ପାଖରେ କଟାଇଥିଲି ଏବଂ ୧୩ ତାରିଖ ସନ୍ଧ୍ୟାରେ ତାଙ୍କ ପାଖରେ ଥିଲି । ସେ ଉଠି ବସିଲେ, ଆଳାପ କଲେ ଏବଂ ଚା, ବିସ୍କୁଟ ଖାଇଲେ । ସେହି ଆଳାପ ବେଳେ ସାଥୀ ବୈଦ୍ୟନାଥ ରଥ ତାଙ୍କ ବନ୍ଧୁଙ୍କ ସହ ସେଠାରେ ପହଞ୍ଚିଥିଲେ । ତାହା ପରଦିନ କଟକ ଗଲେ, ତାଙ୍କର ସେହିଠାରେ ଦେହାନ୍ତ ହେଲା । ତାଙ୍କର ମୃତ୍ୟୁ ଯୋଗୁଁ ଓଡ଼ିଶାର କମ୍ୟୁନିଷ୍ଟ ପାର୍ଟି ଓ ସମସ୍ତ ପ୍ରଗତିଶୀଳ ଜନସାଧାରଣଙ୍କ ମନରେ ବିରାଟ ଆଘାତ ଆସିଲା । ଅଳ୍ପଦିନ ତଳେ ଓଡ଼ିଶାର ଅନ୍ୟତମ ବିପ୍ଳବୀ ନେତା ଶରତ ପଟ୍ଟନାୟକ ଦେହାନ୍ତ ହୋଇଥିଲେ । ପଛେ ପଛେ ସଦାନନ୍ଦ ଆମମାନଙ୍କୁ ଦୁଃଖ ଦେଇ ବିଦାୟ ନେଲେ ।

# ସେ କାଳର ବ୍ରହ୍ମପୁରର ସେହି ଛାତ୍ରଟି ଯିଏ......

ଗୋବିନ୍ଦ ଚନ୍ଦ୍ର ମହାନ୍ତି

ଗୋଟିଏ ଚିରାଚରିତ କୁଟୁମ୍ବରୁ ଉପର ଧାଡିର କିଛି ଜୀବିତ ଥିବା ବେଳେ ତଳ ଧାଡିର ବ୍ୟକ୍ତିଟି ଚାଲିଗଲେ । ଏକଟି କୁଟୁମ୍ବରେ କେତେ ମର୍ମ ବେଦନା, କେତେ କାନ୍ଦଣା । ଏହା ଅତି ସ୍ୱାଭାବିକ ମାନବିକ ଆଉ ସତ୍ୟ । କିନ୍ତୁ ସମାଜରେ ଏକ ଭିନ୍ନ ଧରଣର ମର୍ମବେଦନା, କାନ୍ଦ କଟା, କୁଟୁମ୍ବଭୁକ୍ତ ନ ହୋଇଥିବା ବ୍ୟକ୍ତି ବିଶେଷଙ୍କ ଲାଗି ହୋଇଥାଏ । ଏହା ମଧ୍ୟ ମାନବିକ, ସ୍ୱାଭାବିକ, ବ୍ୟକ୍ତିଟି ଯଦି ନିଜ ପରିବାରର କ୍ଷୁଦ୍ର ଗଣ୍ଡି ମଧ୍ୟରୁ ବାହାରି ଆସି ସମାଜ ପାଇଁ, ଦେଶ ପାଇଁ, ମାନବ ଜାତି ଲାଗି ଗୋଟିଏ ନୀତି ଆଦର୍ଶକୁ ଗ୍ରହଣ କରି ଗୋଟିଏ ବଡ ପରିବାରରେ ମିଶେ, ଆଉ ସେଇ ପରିବାରରେ ନିଜ କାର୍ଯ୍ୟ ବଳରେ ପ୍ରତିଷ୍ଠା ଲାଭ କରିଥାଏ ସେପରି ବ୍ୟକ୍ତିଟି ଠାରୁ ଉପର ଧାଡିରେ ଥିବା ଲୋକ ବଞ୍ଚିଥିବାବେଳେ ସେ ଚାଲିଗଲେ ଉପରଧାଡିର ସେହି ବ୍ୟକ୍ତିମାନେ ପରିବାରର ଲୋକ ଠାରୁ ଅଧିକ ଶୋକବିହ୍ୱଳ ହୋଇଯାନ୍ତି । ତାଙ୍କ ତଳ ଧାଡିରେ ଯେଉଁମାନେ ନୂଆ ପରିବାରରେ ମିଶିଥାନ୍ତି, ସେମାନେ ମଧ୍ୟ ଦୁଃଖରେ ଭାଙ୍ଗି ପଡନ୍ତି ।

କେତେକ ଆମେ ଉପରଧାଡିରେ ଏବେବି ଥିବାବେଳେ ଏହିପରି ଏକ ବ୍ୟକ୍ତି ପୁରୁଷ ସଦାନନ୍ଦ ମହାନ୍ତିଙ୍କର ଦେହାବସାନ ହେଲା । ୧୯୪୫-୪୬ରୁ ୧୯୯୧ ଏହି ଦୀର୍ଘ କାଳ ତାଙ୍କ ସହିତ ସଂପର୍କ । ପୁଅ, ଝିଅ, ଜ୍ୱାଇଁ, ପତ୍ନୀ, ଆତ୍ମୀୟତ ନଭେମ୍ବର ୧୫ରେ ଭଗବତୀଭବନରେ ତାଙ୍କ ଶବାଧାର ପାଖରେ କାନ୍ଦିଲେ । କିନ୍ତୁ ସେମାନଙ୍କ ବିକଳ କାନ୍ଦଣା ସହିତ ମିଶିଗଲା ବହୁ ଲୋକଙ୍କର ଅଶ୍ରୁ- ଆଉ ଶେଷ ଶ୍ରଦ୍ଧାଞ୍ଜଳି ! ପୁରୀ ଶ୍ମଶାନରେ ସେହି ବିକଳ ଅଶ୍ରୁପାତ । ଭଗବତୀ ଭବନରେ ଦଳମତ ନିର୍ବିଶେଷରେ ଯିଏ ସମ୍ବାଦ ପାଇଛି ଆସି ଉପସ୍ଥିତ । କଂଗ୍ରେସ, ଜନତା ଦଳ, ଜନତା ପାର୍ଟି, ସି.ପି.ଆଇ. (ଏମ୍)ର ତୁଙ୍ଗ ନେତା, ସି.ପି.ଆଇ.ର ତୁଙ୍ଗ ନେତା ଓ କର୍ମୀ, ବହୁ ମନ୍ତ୍ରୀ, ପ୍ରଶାସକ, ଶ୍ରମିକ ନେତା, ମହିଳା ନେତ୍ରୀ, କର୍ମଚାରୀ ନେତା । ଦୂରଦର୍ଶନରୁ ପୂର୍ବ ରାତିରେ ସମ୍ବାଦ ପାଇ ଓଡିଶାର ସବୁ ଜିଲ୍ଲାରେ ବିଶେଷ ଭାବରେ ଗଞ୍ଜାମର ପୁରପଲ୍ଲୀ, ସହର ଶିଳ୍ପାଞ୍ଚଳରେ ଶତ ଶତ ନୁହେଁ, ସହସ୍ର ସହସ୍ର ଜନତା ଶୋକ କରିଥିଲେ । ଗଞ୍ଜାମ ଆଳପୁରର ଛୋଟିଆ ପରିବାରରୁ ଏକ ନୂତନ ଆଦର୍ଶ ଘେନି ସଂଗ୍ରାମ, ସଂଗ୍ରାମ ଭିତରେ ଯାତନା, ନିର୍ଯାତନା, ସଂଗ୍ରାମ ଗୁଡିକରେ ନେତୃତ୍ୱଦାନ ଏଇଥି ଯୋଗୁଁ ତ ଏପରି ବ୍ୟାପକ, ଶୋକ ।

କିଏ କହିବ ସେ ଯେଣୁ ଦୁଇ ଦୁଇ ଥର ଓଡିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ, ତେଣୁ ସେ ଏପରି ପ୍ରତିଷ୍ଠା ଲାଭ କରିଥିଲେ । ଆଉ କିଏ କହିବ ସେ ଗୋଟାଏ ଯୁଗରୁ ଅଧିକକାଳ ଓଡିଶାରେ ସି.ପି.ଆଇ.ର ତୁଙ୍ଗ ନେତୃତ୍ୱକୁ ଆସି ସଂପାଦକ ହୋଇଥିଲେ । ସେ ଜଣେ ସୁବକ୍ତା, ଜଣେ ଉଚ୍ଚକୋଟୀର ତର୍କବାଗ୍ମିତା, ଆଉ ତାଙ୍କ ପାର୍ଟିର କେନ୍ଦ୍ରୀୟ ସ୍ତରରେ ଏକ ନେତାର ସ୍ୱୀକୃତି ପାଇଥିଲେ । ତେଣୁ ସେ ଏପରି ସମ୍ମାନଜନକ ଆସନ ଲାଭ କରିଥିଲେ । ଏଗୁଡିକ ଅବଶ୍ୟ ସତ୍ୟ । କିନ୍ତୁ କାହିଁକି, କେଉଁ ଐତିହାସିକ ପଟଭୂମିରେ ସାମାଜିକ- ରାଜନୈତିକ ପରିସ୍ଥିତିରେ ସେ କାଳର କୃତୀ ଉଦୀୟମାନ ଯୁବକ ପାଠ ପଢା ସାରି ନିଜ ପରିବାରର ଗଣ୍ଡିରେ ଆବଦ୍ଧ ନରହି ଏକ ବଡ ପରିବାରକୁ ଆସିଲା ଏବଂ ସେହି କାରଣରୁ ହିଁ ସେ ଯଶ ଅର୍ଜନ କରିପାରିଲା, ତାହା ଶୋକ ମୁହୂର୍ତ୍ତରେ କ୍ୱଚିତ ବିଚାରକୁ ନିଆଯାଏ ।

ସେକାଳ ହିଁ ସ୍ୱାଧୀନତା ଆସି ନାହିଁ, ମାତ୍ର ସଂଗ୍ରାମ ସରିନାହିଁ । ୧୯୪୨ ଭାରତ ଛାଡ ଆନ୍ଦୋଳନରେ ବ୍ରହ୍ମପୁର ଜେଲ୍‌ରେ ସହସ୍ରାଧିକ ସ୍ୱାଧୀନତା ସଂଗ୍ରାମୀ ବନ୍ଦୀ । ଜେଲ ମୁକ୍ତି ଆରମ୍ଭ ହୋଇନି । ସାରା ଭାରତର ଲକ୍ଷାଧିକ ବନ୍ଦୀ । ୧୯୪୫/୪୬ । ସାରା ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ଆକୁମାରୀ ହିମାଳୟ ମହାଉଦ୍‌ବେଳନ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ମହାନଗରୀ, ନଗରୀ, ଶିଳ୍ପ କେନ୍ଦ୍ରମାନଙ୍କରେ ଲକ୍ଷ ଲକ୍ଷ ଯୁବ ଛାତ୍ର ବୁଦ୍ଧିଜୀବୀ, ମହିଳା ଶ୍ରମିକଙ୍କ ବିକ୍ଷୋଭ । ଜାତୀୟ ମୁକ୍ତିବାହିନୀ (ଆଇ.ଏନ୍.ଏ.)ର ବନ୍ଦୀମାନଙ୍କ ଲାଲକିଲ୍ଲାରେ ବିଚାର ବିରୁଦ୍ଧରେ ଉତ୍ତାଳ ଜନବିସ୍ଫୋରଣ ବିକ୍ଷୋଭ । ରସିଦ ଅଲି ମୁକ୍ତି ଦିବସ ଦାବୀ । ଏତିକି ବେଳେ ସ୍ପେନ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ଇନ୍ଦୋନେସିଆରେ ଯୁଗାନ୍ତକାରୀ ମୁକ୍ତି ଆନ୍ଦୋଳନ । ତାହାପ୍ରତି ସହମତି ଜଣେଇ ଭାରତ ବ୍ୟାପୀ ବିଶାଳ ବିଶାଳ ସମାବେଶ । ଦ୍ୱିତୀୟ ମହାସମରରେ ମୁଖ୍ୟତଃ ସୋଭିଏତ୍ ଲାଲବାହୀ ଓ ସୋଭିଏତ୍‌ବାସୀଙ୍କ ଅପରିସୀମ ତ୍ୟାଗ ଫଳରେ ହିଟଲର ଫାସିସ୍ତବାଦ ଓ ଜାପାନୀ ସମରବାଦର ପରାଜୟ । ଦକ୍ଷିଣପୂର୍ବ ଏସିଆର ବର୍ମା, ଇନ୍ଦୋଚୀନ୍, କୋରିଆ ପ୍ରଭୃତିରେ ଏବଂ ଆଫ୍ରିକା ମହାଦେଶ ଓ ମଧ୍ୟ ପ୍ରାଚ୍ୟରେ ବିଶାଳ ମୁକ୍ତି ସଂଗ୍ରାମ । ଭାରତରେ ୧୯୪୬ ଫେବୃଆରୀ ୧୯ରେ ବମ୍ବେରେ ପ୍ରଖ୍ୟାତ ନୌବିଦ୍ରୋହ । ଏହାସବୁ ସଂଗ୍ରାମରେ ସାମିଲ ହେବାକୁ ଛାତ୍ରମାନଙ୍କୁ ଛାତ୍ର ସଂଘ ଦେଇଥାଏ ଡାକରା । ଜେଲ୍‌ରେ ଶହ ଶହ କଂଗ୍ରେସ, ସୋସଲିଷ୍ଟ, ଗାନ୍ଧିବାଦୀ, କମ୍ୟୁନିଷ୍ଟ ଓ ସେ କାଳର ଛାତ୍ର ସଂଘ ନେତାମାନେ ବନ୍ଦୀ । ଯେଉଁମାନେ ପରବର୍ତ୍ତୀ କାଳରେ ଛାତ୍ର ସଂଘର ପତାକା ତଳେ ଦେଶର ଭିନ୍ନ ନେତାମାନଙ୍କ ମୁକ୍ତି, ଦେଶର ସ୍ୱାଧୀନତା ଲାଗି ଚାଲିଥିବା ଜନ ସଂଗ୍ରାମରେ ଭାରତର ଅନ୍ୟତ୍ର ଓଡିଶାରେ ଅନ୍ୟ ସ୍ଥାନ ପରି ଗଞ୍ଜାମ ବ୍ରହ୍ମପୁରରେ ଛାତ୍ର ଉଦ୍‌ବେଳନ । ସେହି ଉଦ୍‌ବେଳନର ନେତା ହେଲେ ମୁଖ୍ୟତଃ ଚାରିଜଣ ।

ସଦାନନ୍ଦ, ବିଶ୍ୱନାଥ, ଦୂତିକୃଷ୍ଣ, ହରିବନ୍ଧୁ । ଆଉ ପରବର୍ତ୍ତୀ କାଳରେ ସଦାନନ୍ଦଙ୍କ ସମେତ ତାଙ୍କର ଏହି ତିନି ଜଣ ଘନିଷ୍ଠ ସହଯୋଗୀ ସମାନସ୍କନ୍ଧ ହୋଇ ଓଡ଼ିଶାର ରାଜନୈତିକ ଜୀବନରେ ଆବିର୍ଭୂତ ହେଲେ । ଏବଂ ଆଚମ୍ବିତ ଲାଗିପରେ, ଏମାନେ ହିଁ କଂଗ୍ରେସ ଆଦର୍ଶ, ଛାତ୍ର ସଂଘର ଲକ୍ଷ୍ୟ ଓ ଆଦର୍ଶ ସହିତ କମ୍ୟୁନିଷ୍ଟ ଆଦର୍ଶ ଗ୍ରହଣ କଲେ ଓ ପରବର୍ତ୍ତୀ କାଳରେ କମ୍ୟୁନିଷ୍ଟ ପାର୍ଟିର ଶୀର୍ଷ ନେତୃତ୍ୱରେ ରହିଲେ ଏବଂ ସଦାନନ୍ଦ ହୋଇଗଲେ ସେମାନଙ୍କ ମଧ୍ୟରେ ଶୀର୍ଷ ।

ମୁଁ ଯେପରି ବିଚାରୁଛି, ସଦାନନ୍ଦ ଯଦି ଛାତ୍ର ସଂଘର ପତାକା ବହନ କରି ଛାତ୍ରମାନଙ୍କର ସେକାଳର ନେତା ହୋଇ ନିଜର ସାଂଗଠନିକ, ରାଜନୈତିକ ଜୀବନର ପ୍ରଥମ ପାଠ ପଢ଼ି ନଥାନ୍ତେ, ତେବେ ତାଙ୍କ ଅଧୁନା ଜୀବନ ଅନ୍ୟମୁଖୀ ହୋଇଥାନ୍ତା ।

ସେତେବେଳେ ଓଡ଼ିଶାର କଲେଜ ବା କେତୋଟି ଗହଣା ମଧ୍ୟରେ ନିମ କାଠି ରେଭେନ୍ସା କଲେଜ ଆଉ ବ୍ରହ୍ମପୁରର ଖଲ୍ଲିକୋଟ କଲେଜ- ସେଥିରେ ପୁଣି ବି.ଏ. କ୍ଲାସ ଖୋଲା ହେଉଥାଏ ମାତ୍ର । ସବୁବେଳେ କଲେଜ ଓ ହାଇସ୍କୁଲ ଛାତ୍ର ସମସ୍ତଙ୍କୁ ମିଶେଇଲେ ୧୦/୧୨ ହଜାର ହେବକି ନା । କଲେଜ ଛାତ୍ର ୨ ହଜାରରୁ ହିଁତ ଡେଇଁବ ନାହିଁ । ଅଥଚ ୧୯୩୬ରୁ ଛାତ୍ର ସଂଘ ସାମ୍ରାଜ୍ୟବାଦ ବିରୋଧୀ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେବା ଲାଗି ଯେଉଁ ଆହ୍ୱାନ ଦେଇଥିଲା, ତାହା ଭାରତ ପରି ଓଡ଼ିଶାର ସାମଗ୍ରିକ ଜୀବନକୁ ପ୍ରଭାବିତ କରିଥିଲା- ବିଶେଷତଃ ରାଜନୀତିକୁ । ତାହାହିଁ ଥିଲା ଏକମାତ୍ର ଛାତ୍ର ସଂଗଠନ । ସ୍ୱାଧୀନତା ପର୍ଯ୍ୟନ୍ତ ଛାତ୍ର ସଂଘରେ ଯେଉଁମାନେ ନେତୃତ୍ୱ ନେଇଥିଲେ, ସେମାନେ ସ୍ୱାଧୀନତା ପରେ କେତେ ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ, ଦକ୍ଷ ପ୍ରଶାସକ, କୁଳପତି, ଏମ୍.ପି., ଏମ୍.ଏଲ୍.ଏ., ସାମ୍ବାଦିକ, ବିଜ୍ଞାନୀ ନାମଜାଦା ସାହିତ୍ୟିକ, କବି,- ସାହିତ୍ୟ ଏକାଡେମୀ- ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ପଦ୍ମଶ୍ରୀ ।

ସେଇଠୁ ରାଜନୈତିକ ତାଲିମ ନେଇ ଅନେକ କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ଫରୱାର୍ଡ ବ୍ଲକ୍‌ରେ, କମ୍ୟୁନିଷ୍ଟପାର୍ଟିରେ ଶୀର୍ଷ ସ୍ଥାନରେ ରହିଲେ । ଏହି ଆନ୍ଦୋଳନ ହିଁ ତାଙ୍କୁ ତାଙ୍କ କ୍ଷୁଦ୍ର ପରିବାରରୁ ନେଇ ଆସିଲା ଏକ ବୃହତ ପରିବାରକୁ- କମ୍ୟୁନିଷ୍ଟ ପରିବାରକୁ । ଗଞ୍ଜାମ ଜିଲ୍ଲାରୁ ଓଡ଼ିଶାର ରାଜନୈତିକ ସାମରିକ ଜୀବନକୁ !

ସେତେବେଳେ କମ୍ୟୁନିଷ୍ଟ ଷଡଯନ୍ତ୍ର ମକଦମା ଓ ଅଗଷ୍ଟ ଆନ୍ଦୋଳନରେ ବନ୍ଦୀ ଥାଇ ମୁକ୍ତିଲାଭ କରୁଥାନ୍ତି କମ୍ୟୁନିଷ୍ଟ ମାନେ । ସଦାନନ୍ଦ ଓ ତାଙ୍କ ସହକର୍ମୀ ଘନିଷ୍ଠ ବନ୍ଧୁମାନଙ୍କର ତତ୍ତ୍ୱଗୁରୁ ହେଲେ ତତ୍କାଳୀନ ବୁଦ୍ଧିଜୀବୀ କମ୍ୟୁନିଷ୍ଟ ନେତା ବିଜୟ ଚନ୍ଦ୍ର ଦାସ । ତତ୍ତ୍ୱ ସାଙ୍ଗକୁ ତତ୍ତ୍ୱକୁ ରୂପାୟନ କରିବା ଲାଗି କର୍ମକ୍ଷେତ୍ର- କର୍ମ ଆବଶ୍ୟକ । ଆଉ କର୍ମଗୁରୁ ହେଲେ ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଗୋବିନ୍ଦ ପ୍ରଧାନ, ହରିହର ଦାଶ ପ୍ରମୁଖ । ଭଗବତୀ ଚରଣ ପାଣିଗ୍ରାହୀଙ୍କ ୧୯୪୩ ଦୁର୍ଭିକ୍ଷ ବେଳେ ଗଞ୍ଜାମରେ ସେବା ଓ ରାଜନୀତି କାର୍ଯ୍ୟ ଓ ଦୁରାରୋଗରେ ମୃତ୍ୟୁ ଏବଂ ସାଧୁ ଚରଣ ମହାନ୍ତି, ଗୁରୁ ଚରଣ ପଟ୍ଟନାୟକ ପ୍ରମୁଖଙ୍କ ଗଞ୍ଜାମରେ ରଇତ ଆନ୍ଦୋଳନକୁ ନୂତନ ସଂଗ୍ରାମୀ ରୂପରେଖ ଦେବାରେ ଅବଦାନ ହେତୁ ସ୍ୱାଧୀନତା ପୂର୍ବରୁ ମଧ୍ୟ ଜମିଦାରୀ ପ୍ରଥା, ସାମନ୍ତବାଦୀ ପ୍ରଥା ବିରୁଦ୍ଧରେ ଗଢ଼ି ଉଠିଲା ପ୍ରଚଣ୍ଡ ରଇତ ଆନ୍ଦୋଳନ- ବିଖ୍ୟାତ ମୁସ୍ତାଦାରୀ ପ୍ରଥା ଉଚ୍ଛେଦ ବିରୋଧୀ ଆନ୍ଦୋଳନ । ସାମନ୍ତବାଦ- ସାମ୍ରାଜ୍ୟବାଦ- ସାମ୍ରାଜ୍ୟବାଦର ଏକ ଜଘନ୍ୟ ଖୁଣ୍ଟି । ସଦାନନ୍ଦ ଓ ତାଙ୍କ ସାଥୀମାନେ ପାଇଗଲେ କର୍ମକ୍ଷେତ୍ର, ସଂଗ୍ରାମର କ୍ଷେତ୍ର । ପ୍ରଖ୍ୟାତ ରଇତ ନେତାମାନଙ୍କ ସାଙ୍ଗକୁ ଏମାନେ ହେଲେ ଯୁବ ଯୋଦ୍ଧା ।

ରାଜନୀତିରେ ପ୍ରଥମ ପାଠ ପରେ ଦ୍ୱିତୀୟ ପାଠର ଅଧ୍ୟୟନ । ସ୍ୱାଧୀନତା ଆସିଗଲା । ରାଜ୍ୟରେ ୧୯୪୮ ମସିହା । ପ୍ରବଳରୁ ପ୍ରବଳତର ହୋଇଉଠିଲା ଗଞ୍ଜାମର ରଇତ ଆନ୍ଦୋଳନ । ଅବିସ୍ମରଣୀୟ, ଅବିଶ୍ୱାସନୀୟ ଜନସମାବେଶ, ଚାଷୀ ରଇତ ବିକ୍ଷୋଭ । ଏହାହିଁ ଗଭୀର ରେଖାପାତ କଲା ସଦାନନ୍ଦ ଏବଂ ତାଙ୍କ ସାଙ୍ଗସାଥୀଙ୍କ ଉପରେ । ସେମାନେ ସେଥିରେ ସାମିଲ ହୋଇ ଦ୍ୱିତୀୟ ଧାଡ଼ିର କର୍ମୀ ହେଲେ ମୁଖ୍ୟମନ୍ତ୍ରୀ ମହତାବ । ତାଙ୍କରତାରେ ଗୁଳି- ୬ ଜଣଙ୍କ ପ୍ରାଣ ଗଲା । ଆନ୍ଦୋଳନ ଦବିଲା ନାହିଁ- ପ୍ରଖରରୁ ପ୍ରଖର ହେଲା । ସାରା ଭାରତ ପରି ଓଡ଼ିଶାରେ ଚାଲିଲା କମ୍ୟୁନିଷ୍ଟ ମାନଙ୍କ ଉପରେ ନାହିଁ ନଥିବା ଆକ୍ରମଣ । ଓଡ଼ିଶାରେ କମ୍ୟୁନିଷ୍ଟ ମାନଙ୍କୁ ବ୍ରହ୍ମପୁର, କଟକ, କୋରାପୁଟ ଜେଲ୍‌ରେ ଠୁଙ୍କି ଦିଆଗଲା । ଗଞ୍ଜାମର ରଇତ ଗାଁଗୁଡ଼ିକ ଉପରେ ଚଡ଼କ । ଗୋପନରେ ସଂଗ୍ରାମକୁ ଅବ୍ୟାହତ ରଖିବା ଲାଗି ୧୯୪୦-୪୫ ଜେଲ ମୁକ୍ତି ପରେ କେତେ ତୁଙ୍ଗ ନେତା ଗୋପନରେ ବଣ ଜଙ୍ଗଲରେ ରହିଲେ । ରାମକୃଷ୍ଣ ପତି, ଗୁରୁ ଚରଣ ପଟ୍ଟନାୟକ, ନନ୍ଦ କିଶୋର ପଟ୍ଟନାୟକ, ବୈଦ୍ୟନାଥ ରଥ, ଦୁର୍ଗା ଚରଣ ମହାନ୍ତି ପ୍ରମୁଖ କେନ୍ଦ୍ରୀୟ ଗୁପ୍ତ ଆଡ୍ଡାରେ ।

କୋରାପୁଟ ଜେଲ୍‌ରେ ରାମଚନ୍ଦ୍ର ମିଶ୍ର ଆବଦ୍ଧ । କଟକ ଜେଲ୍‌ରେ ବନମାଳି ଦାସ, ଲୋକନାଥ ଚୌଧୁରୀ, କୃଷ୍ଣ ପଟ୍ଟନାୟକ, ଗିରିଜା ପଟ୍ଟନାୟକ, ବୈଷ୍ଣବ ପଟ୍ଟନାୟକ, ପ୍ରହ୍ଲାଦ ସେଠୀ, ବିଶ୍ୱମ୍ଭର ସାମନ୍ତ, ବଜୟବର୍ଦ୍ଧନ ପ୍ରମୁଖ ଅନେକ ।

ଆଉ କେନ୍ଦ୍ର ଜେଲ୍ ବ୍ରହ୍ମପୁର- ଗୋବିନ୍ଦ ପ୍ରଧାନ, ହରିହର ଦାସ, ସାଧୁଚରଣ ମହାନ୍ତି, ପ୍ରାଣନାଥ ପଟ୍ଟନାୟକ, ବିଜୟ ଚନ୍ଦ୍ର ଦାସ, ସର୍ଦ୍ଦାର ଦଣ୍ଡପାଣି, ଜୁର ପାତ୍ର, ସୂର୍ଯ୍ୟନାରାୟଣ ଆଚାରୀ ଦୁଃଖୀ ଶ୍ୟାମ ଦାସ ଏମିତି ଶହେ ଯାଏଁ । ଏମାନଙ୍କ ମଧ୍ୟରେ ସଦାନନ୍ଦ, ଦୂତିକୃଷ୍ଣ, ବିଶ୍ୱନାଥ ହରିବନ୍ଧୁ । ତତ୍ତ୍ୱରୁ କର୍ମକ୍ଷେତ୍ର ଓ ଜେଲବାସ । ଏହାହିଁ ଏହି ନବୀନ ଯୁବକମାନଙ୍କୁ ଆଗାମୀ ଦିନର ସଂଗ୍ରାମ ଲାଗି ଏକ ଶିକ୍ଷା ଶିବିର ହେଲା । ଏ ହେଲା ଅନ୍ୟ ଯୁବକ- କମ୍ୟୁନିଷ୍ଟମାନଙ୍କ ପରି ତାଙ୍କ ପାଇଁ ଏହା ତୃତୀୟ ପାଠ, ତୃତୀୟ ଶିକ୍ଷା । ଜେଲଖାନା ଭିତରେ ଅତିତ ସଂଗ୍ରାମଗୁଡ଼ିକର ସମୀକ୍ଷା, ସେଥିରେ କୃତିତ୍ୱ ଓ ଦୋଷ ଦୁର୍ବଳତାର ଆଲୋଚନା- କେତେ ବିତର୍କ, କେତେ ମତଦ୍ୱନ୍ଦ୍ୱ-ସତ୍ୟର ସନ୍ଧାନରେ ।

ଆଉ ଏକ ଶିକ୍ଷା- ନିର୍ବାଚନ ସଂଗଠନର ଶିକ୍ଷା । ୧୯୫୨ରେ ସମ୍ବିଧାନ ଗୃହୀତ ହେବା ପରେ ପ୍ରଥମ ସାଧାରଣ ନିର୍ବାଚନ । ଗଞ୍ଜାମରେ ୧୧ଟି

ବିଧାନସଭା ଆସନ ମଧ୍ୟରୁ ୪ଟି ଓ ୨ଟି ଲୋକସଭା ଆସନ ମଧ୍ୟରୁ ଗୋଟିଏ ଲାଭ କଲା କମ୍ୟୁନିଷ୍ଟ ପାର୍ଟି । ନା' ଅଛି ଅର୍ଥ, ନା' ଅଛି ଖବରପତ୍ର, ନା' ଅଛି ଗାଡି ମଟର, ସାଇକେଲ । ମାତ୍ର ସମ୍ବଳ ହୋଇଛି ବିଗତ ରକ୍ତକ୍ଷୟୀ ରଇତ ସଂଗ୍ରାମର ପରମ୍ପରା ଓ ଉତ୍ସର୍ଗୀକୃତ ଶତ ଶତ ନବୀନ ଯୁବକ । ସେମାନଙ୍କ ମଧ୍ୟରେ ସଦାନନ୍ଦ ଓ ତାଙ୍କ ଉପରିଭକ୍ତ ସାଥୀମାନେ ଆଗୁଆ । ଶୋଷିତ, ନିର୍ଯାତୀତ ଜନସାଧାରଣଙ୍କ ଆଶା- ଆକାଂକ୍ଷା, ସେମାନଙ୍କର ଦୁଃଖ ଯାତନା ଓ ସେଥିରୁ ମୁକ୍ତି ପାଇଁ ସେମାନଙ୍କର ପ୍ରାଣର ପିପାସା । ଏଗୁଡିକ ପ୍ରଥମ କରି ସଂଗ୍ରାମ ଗୁଡିକର ଅଭିଜ୍ଞତା ନେଇ ସଦାନନ୍ଦ ଓ ତାଙ୍କ ସାଥୀମାନେ ଖାଲି ଗଞ୍ଜାମରେ ନୁହଁ, ଓଡିଶାର ବିଭିନ୍ନ ଜିଲ୍ଲାରେ ଜନ ସଂଗ୍ରାମ ଗୁଡିକର ନୂତନ ସଂଗଠକ ହେଲେ । ଏଇଠୁ ଆଗ୍ରହ ହୁଏ ତାଙ୍କର ରାଜନୈତିକ କ୍ମ୍ୟୁନିଷ୍ଟ ଜୀବନରେ ଉତ୍ତରତର ପର୍ବ । ଜିଲ୍ଲା ପରିସରରୁ ରାଜ୍ୟର ବିସ୍ତାରିତ ପରିସରରେ ଆବିର୍ଭାବ । ୧୯୫୨ରୁ ୧୯୯୧ । ଭାରତରେ ଏବଂ ଆମ ଓଡିଶାରେ ଚାଷୀମାନଙ୍କର, କ୍ଷେତ ମୂଲିଆମାନଙ୍କର, ଶ୍ରମିକ ଶ୍ରେଣୀର, ଛାତ୍ର ଯୁବ ସମାଜର, ବୁଦ୍ଧିଜୀବୀ, ଖଟିଖିଆ କର୍ମଚାରୀମାନଙ୍କର ଅଜସ୍ର ସଂଗ୍ରାମ । ସେହି ସଂଗ୍ରାମ ଗୁଡିକରେ କେତେବେଳେ ସଫଳ୍ୟ, କେତେବେଳେ ପଶ୍ଚାତଗମନ ଏସବୁର ଅଭିଜ୍ଞତା ଅନ୍ୟ ସମସ୍ତଙ୍କ ସଙ୍ଗରେ ତାଙ୍କର ରହିଗଲା ଓ ସେସବୁ ସଂଗ୍ରାମରେ କେଉଁଠି ପ୍ରତ୍ୟକ୍ଷ ଭାବରେ ଯୋଗ ଦେଇଥିଲେ ଅବା ପାର୍ଟିର ଉଚ୍ଚସ୍ତରରେ ରହି ନେତୃତ୍ଵ ନେଉଥିଲେ ।

ଗଞ୍ଜାମର ରଇତ ଆନ୍ଦୋଳନ ଓ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରଭାବ ଓ ତାଙ୍କର ପ୍ରବର୍ତ୍ତନାରେ ତାଙ୍କର ଦୁଇଜଣ ବଡଭାଇ ଅନ୍ତର୍ଯାମୀ ମହାନ୍ତି, ନିତ୍ୟାନନ୍ଦ ମହାନ୍ତି ମଧ୍ୟ ସଂଗ୍ରାମରେ ଝାସ ଦେଇଥିଲେ । ଭଗବତୀ ଭବନରେ ତାଙ୍କୁ ଆମେ ଶେଷ ଶ୍ରଦ୍ଧାଞ୍ଜଳି ଦେଲୁ । ଏହି ଭବନକୁ ଅଧା ନିର୍ମାଣ ଅବସ୍ଥାରୁ ଚୂଡାନ୍ତ ରୂପ ଦେବାରେ ତାଙ୍କର ଭୂମିକା ମଧ୍ୟ ସ୍ମରଣୀୟ । ଯେମିତି ସ୍ମରଣୀୟ ଯେଉଁମାନେ ଅକାତରେ ପାର୍ଟି ଭବନ ନିର୍ମାଣ ଲାଗି ଭୂମି ଦେଇଛନ୍ତି, ଅର୍ଥ ଦେଇଛନ୍ତି, ଶ୍ରମ ଦେଇଛନ୍ତି ।

ତାଙ୍କର ସ୍ମୃତି ଚାରଣ କଲାବେଳେ ସ୍ଵାଭାବିକ ଭାବରେ ତାଙ୍କ ସଂଗରେ ଓ ଆମମାନଙ୍କ ସଂଗରେ ଥାଇ ଯେଉଁମାନେ ସ୍ଵାଧୀନତା ଅର୍ଜନ ଏବଂ ନୂତନ ଶୋଷଣ ବିହୀନ ସମାଜ ଗଠନ ଲାଗି ପ୍ରାଣପାତ ସଂଗ୍ରାମ କରି ଚାଲିଯାଇଛନ୍ତି ସେମାନଙ୍କୁ ସ୍ମରଣ କରୁ । ସ୍ମରଣ କରୁ ସାରା ପୃଥିବୀରେ ଶୋଷଣବିହୀନ ସମାଜଗଢିବା ଲାଗି ମାର୍କ୍ସବାଦ- ଲେନିନ୍‌ବାଦର ଆଦର୍ଶକୁ ରୂପାୟନ କରିବା ସଂଗ୍ରାମରେ ଯେଉଁ ଲକ୍ଷ ଲକ୍ଷ ବ୍ୟକ୍ତି ପ୍ରାଣ ଦେଇଛନ୍ତି, ସେମାନଙ୍କୁ । ସେହି ଆଦର୍ଶର ଜଣେ ବାହକ ହୋଇ ସଦାନନ୍ଦ ସମାଜରେ ମାନ୍ୟତା ପାଇଥିଲେ ।

ଆଜି ଅକ୍ଟୋବର ବିପ୍ଳବର ଜନ୍ମଭୂମି, ସୋଭିଏତ୍ ୟୁନିଅନ୍‌ରେ ଘଟିଥିବା ପଶ୍ଚାତଗାମୀ ଘଟଣାବଳୀ ସେହି ମହାନ୍ ଆଦର୍ଶକୁ ପୃଥିବୀର ପ୍ରବଞ୍ଚିତ, ନିର୍ଯାତୀତ, ନିବୀଡିତ ସୁବିଶାଳ ଖଟିଖିଆ ଜନତାର ମାନସ ପଟରୁ ବିଦୁରିତ କରିପାରିବ ନାହିଁ । ସେହି କାଳଜୟୀ ଆଦର୍ଶର ଚୂଡାନ୍ତ ବିଜୟ ଅପରିହାର୍ଯ୍ୟ । ମାନବ ଜାତିର ଏକମାତ୍ର ମୁକ୍ତି, ସମୃଦ୍ଧି, ବିକାଶର ମାର୍ଗ । ପୁଞ୍ଜିବାଦ ହୋଇ ନାହିଁକି ହୋଇପାରେନା । ସଦାନନ୍ଦ ସେହି ମାର୍ଗପଥର ଯାତ୍ରୀ ଥିଲେ ।

ତାଙ୍କୁ ଶ୍ରଦ୍ଧାଞ୍ଜଳି ଦେବାବେଳେ ଆମେ ଅବିଚଳ ଭାବରେ ଆମ ମାତୃଭୂମି ଭାରତ ବର୍ଷରେ ସେପରି ଏକ ସମାଜ ଆଣିବା ସଂଗ୍ରାମରେ ମାର୍କ୍ସବାଦ-ଲେନିନ୍‌ବାଦକୁ ଆମ ଧ୍ରୁବତାରା ଧରି ଆଗେଇ ଚାଲିବୁ ।

# ଅମାନିଆ ବିପ୍ଲବୀ ସଦାନନ୍ଦ

ଦ୍ୟୁତିକୃଷ୍ଣ ପଣ୍ଡା

ଜୀବନର ଶେଷ ନିଃଶ୍ୱାସର ଶେଷ ସେକେଣ୍ଡରେ ତାର କ୍ଷୀଣ କଣ୍ଠରୁ କ୍ଷୀଣ ସ୍ୱର ବିଳି ବିଳେଇଲା 'ଦୁତୀ କାହିଁ', ରାଜୁରେ ଦୁତୀ ନାହିଁ ? ସେ ଯେଉଁଠି ଶେଷ କଲା, ମୁଁ ସେଇଠୁ ଆରମ୍ଭ କରୁଛି ।

ମୁଁ କହିଥିଲି, ମୁଁ ତୋ କାନ୍ଧରେ ଯିବି- ସେ କହିଥାଏ ସେ ମୋ କାନ୍ଧରେ ଯିବ । ଶେଷରେ, ଶେଷ ଜୀବନରେ ସେ ହେଲା କ୍ରୁର, ନିଷ୍ଠୁର । ମୁଁ ଭଣ୍ଡାରୀ ପୋଖରୀ ସଭାରେ- ସଜ ଉଣ୍ଡି ସେ ଚାଲିଗଲା ମୋତେ ଛାଡି ଦେଇ- ମୋର ମନା ମାନିଲା ନାହିଁ । କିନ୍ତୁ ତାର ଶେଷ ନିଶ୍ୱାସ ମୋତେ ଝୁରି ଝୁରି ଝରିଗଲା ।

**କଲେଜରେ ଛାତ୍ର ଜୀବନ—** ଯୌବନର ପ୍ରବାହ, ମୁକ୍ତି ସ୍ୱାଧୀନତା ପାଇଁ ବ୍ୟଗ୍ରତା ସଂଗ୍ରାମ ପାଇଁ ବ୍ୟାକୁଳତା ଭିତରୁ ଆମେ ୧୯୪୫ରେ ହେଲୁ ମିଳିତ । ୧୯୪୬ ସାଲ, ଏ.ଆଇ.ଏସ୍.ଏଫ୍.ର ଜିଲ୍ଲା ସମ୍ମିଳନୀ ବ୍ରହ୍ମପୁରରେ । ଖଞ୍ଜଣୀ ବଜାଇ ଗୀତ ଗାଇବା ପାଇଁ ମୋତେ ପ୍ରେରଣା ଦେଲା । ସ୍ୱର୍ଗତ ବିପ୍ଳବୀ ସାଥୀ, ତନ୍ତ୍ର ବିଶାରଦ ସାଥୀ ବିଜୟ ଦାସଙ୍କ ଅଧ୍ୟକ୍ଷତାରେ କମିଟି ଗଠିତ ହୋଇଥିଲା । କମ୍ପିଟ୍ସନ୍‌ରେ ମୁଁ 'ଗଣତନ୍ତ୍ର' ଉପରେ ପ୍ରତିଯୋଗିତାରେ ପ୍ରଥମ ପୁରସ୍କାର ପାଇଲି । ଶ୍ୟାମ ସୁନ୍ଦର ପାଢୀ (ଅବସରପ୍ରାପ୍ତ ଡି.ଜି.) ଦ୍ୱିତୀୟ ପୁରସ୍କାର ପାଇଲେ ।

**ଖଞ୍ଜଣୀରେ ଗାଇଲି—** ସ୍ୱତଃସ୍ଫୁର୍ତ୍ତ କବି ଶଶୀଭୂଷଣ ପଟ୍ଟନାୟକଙ୍କ ରଚିତ ଗୀତଟି "ବାଇମନରେ ମିଛେ ଭୁଲୁ କି ପାଇଁ- ହାତ ଟେକି କେହି ଯାଚି ଯାଚି କାହିଁ ସ୍ୱାଧୀନତା କାରେ ଦିଅଇ ନାହିଁ" ବରେଣ୍ୟ, ଚିର ଅମର ସାଥୀ ବିଜୟ ଦାସ ଦେଲେ ପ୍ରଥମ ପୁରସ୍କାର । ମୁଁ ଉଦ୍‌ବୁଦ୍ଧ ହେଲି । ଛାତ୍ର ସଂଘର ସକ୍ରୀୟ ସଭ୍ୟ ହେଲି । ସାଥୀ ସଦାନନ୍ଦ ଗାଇବା, ନାଚିବା, ଗୀତ ଲେଖିବା, କଲେଜ ଡ୍ରାମାରେ ମୁଖ୍ୟ ଭୂମିକା ନେବା କଥା ଜାଣି ସାଂସ୍କୃତିକ କାର୍ଯ୍ୟ ଜରିଆରେ ମୋତେ ପାର୍ଟି ଭିତରକୁ ଟାଣି ନେଇଗଲା— ସାଥୀ ସଦାନନ୍ଦ ଥିଲେ Anti Union Jack Movementsର ଅଗ୍ରଣୀ ଯୋଦ୍ଧା- ସୁବକ୍ତା ।

୧୯୪୭ ସାଲ- ତାର ଆଇ.ଏ.ର ଦ୍ୱିତୀୟ ବର୍ଷ । ମୋର ବି.ଏ.ର ଦ୍ୱିତୀୟ ବର୍ଷ । ଐତିହାସିକ ପ୍ରାଦେଶିକ ଛାତ୍ର ସମ୍ମିଳନୀ ଅନୁଷ୍ଠିତ ହେଲା ବ୍ରହ୍ମପୁରରେ । ବିଜୟ ଦାସଙ୍କ ଛାତ୍ର ଆନ୍ଦୋଳନର ଇତିହାସ ବହି ଛପାଇବାକୁ ଟଙ୍କା ଅଭାବ- ସାଥୀ ସଦାନନ୍ଦଙ୍କ ପ୍ରେରଣାରେ ମୁଁ ପ୍ରକୋଟ ଲେଖାଇ ହଠାତ ଏକ ଶତ ଟଙ୍କା ଦେଲି- ବହି ବାହାରିଲା- ଛାତ୍ର ଆନ୍ଦୋଳନ ନୂତନ ମୋଡ଼ ନେବାରେ ଏ ଲେଖା ସାହାଯ୍ୟ କଲା- ମେକାଲଙ୍କ ଶିକ୍ଷା ପଦ୍ଧତି ବିରୁଦ୍ଧରେ ଛାତ୍ରମାନଙ୍କ ଜାତୀୟ ଶିକ୍ଷା ବ୍ୟବସ୍ଥା ପାଇଁ ସଂଗ୍ରାମ ଓ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ ଏକା ଖିଅରେ ଗୁନ୍ଥା ହୋଇଚାଲିଲା । ୧୬୦୦ ପ୍ରତିନିଧି ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ତାକ୍ତର ଆଚମାମ୍ରା- ବିପ୍ଳବିନୀ ଏବଂ ଏଣ୍ଡ୍ରାମାନ ଜେଲ୍‌ରୁ ସଦ୍ୟ ମୁକ୍ତ ବିପ୍ଳବୀ ପ୍ରଭାତକାନ୍ତ ଚକ୍ରବର୍ତ୍ତୀ ଉଦ୍‌ବୋଧନ ଦେଇଥିଲେ । ସାଥୀ ମନମୋହନ ମିଶ୍ର, ନରସିଂହ ତ୍ରିପାଠୀ, ଗଙ୍ଗାଧର ରଥଙ୍କ ଓଜସ୍ୱିନୀ ଭାଷଣ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ସମେତ ୩୦ ଜଣ ଛାତ୍ରୀ ମନମୋହନଙ୍କ ସ୍ୱାଧୀନତା ସଂଗ୍ରାମ ଡ୍ରାମାରେ ଅଂଶ ଗ୍ରହଣ ଏକ ଉଲ୍ଲେଖନୀୟ ଘଟଣା । ମନେ ପଡୁଛି ସେତେବେଳକାର ମନମୋହନଙ୍କ ଗୀତ- "ଆମ୍ବ ଫଳେ ନେନ୍ରା କେନ୍ରା କଯାଫଳେ ବାଙ୍କା, ମୁଁ ବାଦଶା ହେଲେ ଗଢି ଦେନ୍ତି ତୋର ହାତେ ସୁନା ଶଙ୍ଖା- ବନ୍ଧୁର ଢେଉ, ବନ୍ଧୁର ଢେଉ×××" । ଛାତ୍ରୀମାନଙ୍କ ଏହି ମିଳିତ କଣ୍ଠର ଗାନ ବ୍ରିଟିଶ ବିରୋଧୀ ସଂଗ୍ରାମକୁ ଅଧିକ ତେଜିୟାନ କରିଥିଲା ।

ସାଥୀ ସଦାନନ୍ଦ ସ୍ୱର୍ଗତ ଶଶୀ ଭୂଷଣ ପଟ୍ଟନାୟକଙ୍କୁ ଛାତ୍ର ଆନ୍ଦୋଳନ ଭିତରକୁ ଟାଣି ଆଣିଥିଲେ— ସେ ଥିଲେ ସ୍ୱତଃସ୍ଫୁର୍ତ୍ତ କବି- ସେ ସେହି ଏ.ଆଇ.ଏସ୍.ଏଫ୍. ସଂଗଠନରେ ସାମିଲ ହେଲେ- ସେ ଲେଖିଲେ ଓ ମୁଁ ସ୍ୱର ଦେଇ ଗାଇଲି- "ହିନ୍ଦୁ ମୁସଲମାନ, ହିନ୍ଦୁ ମୁସଲମାନ ଏକା ମାଟିର ମଣିଷ ଆମେ, ଏକା ମା'ର ସନ୍ତାନ ।" ଏହିପରି ଭାବେ ଛାତ୍ର ଆନ୍ଦୋଳନର ଜାତୀୟ ମଞ୍ଚ ଏ.ଆଇ.ଏସ୍.ଏଫ୍.ର ଏହି ସମ୍ମିଳନୀ ଦେଶପ୍ରେମୀ ଗାନରେ ମୁଖରିତ ହୋଇ ଉଠିଲା । ଆମେ ଦୁହେଁ ଜିଲ୍ଲାରେ ବିଭିନ୍ନ ଜମିଦାର ମାନଙ୍କ ଠାରୁ ମଧ୍ୟ ଚାନ୍ଦା ସଂଗ୍ରହ କରି ପାରିଥିଲୁ ଏହି ସମ୍ମିଳନୀକୁ ସଫଳ କରିବା ପାଇଁ— ସାଥୀ ସଦାନନ୍ଦଙ୍କ ଉଦ୍ୟମରେ ବହୁ କଲେଜ ପ୍ରଫେସର୍, ମେଧାବୀ ଛାତ୍ର, ଅଭିଭାବକ, କଲେଜର ପ୍ରିନ୍ସପାଲ ନରସିଂହ ପାଢୀ, କଲେଜର ଉପସଭାପତି ଲିଙ୍ଗରାଜ ପାଣିଗ୍ରାହୀ ଏ ସମସ୍ତଙ୍କୁ ଏ.ଆଇ.ଏସ୍.ଏଫ୍. ପାଠରେ ଐକ୍ୟବଦ୍ଧ କରି ପାରିଲୁ । ଗୋଟିଏ ହାତରେ ମେକାଲ ଶିକ୍ଷା ପଦ୍ଧତି ରଦ୍ଦ କର, ମେଟ୍ରିକ୍‌ରେ ଡିଟେନ୍‌ସନ୍ ବ୍ୟବସ୍ଥା ଉଠାଇ ଦିଅ ଓ ଅନ୍ୟ ହାତରେ ବ୍ରିଟିଶ୍ ଶାସନକୁ ଭାରତ ମାଟିରୁ ହଟାଅ । ଏହି ଦାବୀ ଉପରେ ଏହି ସମ୍ମିଳନୀ ବଜ୍ର ଆବାଜ ଉଠାଇଥିଲା । ଶେଷରେ ଛାତ୍ର ସମାଜ ବିଜୟୀ ହେଲା । ଏ.ଆଇ.ଏସ୍.ଏଫ୍. ଓଡିଶା ବିଶେଷ କରି ଗଞ୍ଜାମ ଜିଲ୍ଲାର କୋଣେ କୋଣେ ପ୍ରସାରିତ ହେଲା ।

ଜମିଦାରୀ ଉଚ୍ଛେଦ ସଂଗ୍ରାମରେ ସାଥୀ ସଦାନନ୍ଦଙ୍କ ଭୂମିକା ଉଲ୍ଲେଖନୀୟ । ସେତେବେଳକାର ମହତାବ ସରକାର ଅମଳରେ ଡାକରଡାରେ ଗୁଳି କରି ଜମିଦାରୀ ବିରୋଧୀ କୃଷକ ଆନ୍ଦୋଳନକୁ ଦବାଇବା ଲାଗି ଉଦ୍ୟମ ହେଲା । ଚାଷୀ ନେତାମାନଙ୍କ ବିରୋଧରେ ଶହ ଶହ ମକଦ୍ଦମା କୋର୍ଟ କଚେରୀ ଲେଢେଇ ପରିଚାଳନା ପାଇଁ ଚାଷୀ ତରଫରୁ ଗଢାଗଲା ଡିଫେନ୍ସ କମିଟି । ସେଥିରେ ମୁଁ ଥିଲି ସଂପାଦକ । ସୁଦକ୍ଷ ଓକିଲ ସାଥୀ

ସନ୍ୟାସୀ ରାଓ ଥିଲେ ତାର ସଭାପତି । ପୋଲିସ ତରଫରୁ ସାଥୀ ସଦାନନ୍ଦଙ୍କ ବିରୋଧରେ ଝୁଲୁଥାଏ ୱାରେଣ୍ଟ । ତଥାପି ସେ ବଡ ବଡ ସଭାରେ ବକ୍ତୃତା ଦେଇ ସଭାସ୍ଥଳରୁ ଅଚାନକ ଉଭାନ ହେଉଥାନ୍ତି । ସାଥୀ ସଦାନନ୍ଦ ପାର୍ଟି ଅଫିସରେ ଥିବା ବେଳେ ପୋଲିସ ଦ୍ୱାରା ଗିରଫ ହୋଇ ଜେଲକୁ ଗଲେ । ମୁଁ ଗଲି ଅଜ୍ଞାତବାସ । ସାଥୀ ବିଜୟ ଦାସ ଥିଲେ ଭଗବାନପୁର କେରାଣ୍ଡିମାଳ ପର୍ବତରେ । ମୋ ପାଇଁ ନିର୍ଦ୍ଦେଶ ଆସିଲା ଅଣ୍ଡରଗ୍ରାଉଣ୍ଡ ଯିବା ପାଇଁ । ସାଥୀ ସଦାନନ୍ଦ ରହିଲେ ଜେଲଖାନାରେ । ମୁଁ ରହିଲି ଅଜ୍ଞାତବାସରେ ।

ବ୍ରିଟିଶ୍ ହଟିବ, ତାରି ସୃଷ୍ଟ ଜମିଦାରୀ ପ୍ରଥାର ଉଚ୍ଛେଦ ହେବ । ଏ ଦୁଇଟି ଆନ୍ଦୋଳନ ଏକାଧରରେ ଚାଲିଲା । କମ୍ୟୁନିଷ୍ଟ ପାର୍ଟି ବେଆଇନ ହେଲା । ସାଥୀ ଗୋବିନ୍ଦ ପ୍ରଧାନ, ହରିହର ଦାସ, ବିଜୟ ଦାସ ଧରା ହୋଇ ଜେଲ୍ ଗଲେ । ସେତେବେଳେ ମୁଁ ଅଜ୍ଞାତବାସରେ- ମୋ ସହ ଥାଆନ୍ତି ଅନ୍ତର୍ଯ୍ୟାମୀ ମାହାନ୍ତି ଓ ଅନ୍ୟ ସାଥୀମାନେ । ଜେଲଖାନାର ୫୭ ଦିନ ଅନଶନ ଧର୍ମଘଟ ବାହାରେ ଜନଆନ୍ଦୋଳନକୁ ପ୍ରେରଣା ଦେଉଥାଏ । ସଦାନନ୍ଦ ବାବୁଙ୍କ ଗାଁ ଆଲପୁର ହେଲା ଅଣ୍ଡର ଗ୍ରାଉଣ୍ଡର କେନ୍ଦ୍ର ବିନ୍ଦୁ— ଜିଲ୍ଲା ପାର୍ଟିର କେନ୍ଦ୍ର ଅଫିସ ରୂପେ ଏହି ଠାରୁ ହିଁ ଆନ୍ଦୋଳନର ପରିଚାଳନା ହେଉଥାଏ । ସେ ଗାଁରୁ ୩୦୦ ଯୁବକ ଶୋଭାଯାତ୍ରାରେ ଆସି ପୋଲିସର ୧୪୪ ଭାଙ୍ଗି ଆସିକାରେ ସଭା କଲେ । ୫୦୦୦ ଲୋକଙ୍କ ବିରାଟ ସଭା । ବିରାଟ ଏହି ସଭାର ଉଦ୍ଦେଶ୍ୟ ଥିଲା ସଭା କରିବାର ଗଣତାନ୍ତ୍ରିକ ଅଧିକାର ପ୍ରତିଷ୍ଠା କରିବା ପାଇଁ ।

ସାଥୀ ସଦାନନ୍ଦ ବୈଜ୍ଞାନିକ ସମାଜବାଦକୁ ଗ୍ରହଣ କରି ଆନ୍ଦୋଳନରେ ଝାସ ଦେଲେ । ସେ କେବଳ ନିଜେ କମ୍ୟୁନିଷ୍ଟ ଆନ୍ଦୋଳନରେ ଝାସ ଦେଲେ । ସେ କେବଳ ନିଜେ କମ୍ୟୁନିଷ୍ଟ ଥିଲେ ତା' ନୁହେଁ, ତାଙ୍କର ତିନି ଭାଇ ସକୁଟୁମ୍ବ ଏହି ଆନ୍ଦୋଳନରେ ସକ୍ରିୟ ଭାବେ ସାମିଲ ହୋଇଥିଲେ ।

୧୯୪୭ ସାଲର ଅନ୍ୟ ଏକ ଐତିହାସିକ ସମ୍ମିଳନୀ ହେଉଛି ଗୋବିନ୍ଦ ପ୍ରଧାନଙ୍କ ନେତୃତ୍ୱରେ ଗଞ୍ଜାମ ଜିଲ୍ଲା କୃଷକ ସମ୍ମିଳନୀ । ହଜାର ହଜାର ଲୋକଙ୍କ ଶୋଭାଯାତ୍ରାରେ "ଲଙ୍ଗଳ ଯା'ର ଜମି ତା'ର" "ଭାଗ ଚାଷୀର ସ୍ୱାର୍ଥ ସୁରକ୍ଷା କର" ସ୍ଲୋଗାନରେ ବ୍ରହ୍ମପୁର ସହର ପ୍ରକମ୍ପିତ ହୋଇ ଉଠିଲା । ଏହି ଶୋଭାଯାତ୍ରାର ଅଗ୍ରଭାଗରେ ଦୁଇଶତ ଲାଲ ବାହିନୀଙ୍କ ମଧ୍ୟରେ ସାଥୀ ସଦାନନ୍ଦ ଥିଲେ ଅଗ୍ରଭାଗରେ । ସାଥୀ ସଦାନନ୍ଦ ଏହି ସମ୍ମିଳନୀର ସଫଳତା ପାଇଁ ବ୍ରହ୍ମପୁରର ଶ୍ରମିକ ମାନଙ୍କର ସହଯୋଗ ଓ ସମର୍ଥନ ଆଣିପାରିଥିଲେ । ସାଥୀ ସଦାନନ୍ଦ ଥିଲେ ଯମାଲ ମିଲ୍ ଶ୍ରମିକ ସଂଘର ପ୍ରଥମ ସଂପାଦକ । ୧୯୪୬ ସାଲରେ ସାଥୀ ବିଜୟ ଦାସଙ୍କ ନେତୃତ୍ୱରେ ଏହି ସଂଘ ଗଠିତ ହୋଇଥିଲା । ଶ୍ରମିକ ଚାଷୀର ଏକତା ପ୍ରତିଷ୍ଠା ଦିଗରେ ସାଥୀ ସଦାନନ୍ଦଙ୍କର ଏହାଥିଲା ଏକ ଆଖିଦୃଶିଆ ଅବଦାନ ।

## ୧୯୫୨ ସାଧାରଣ ନିର୍ବାଚନ ଓ ସାଥୀ ସଦାନନ୍ଦ

୧୯୫୨ ସାଧାରଣ ନିର୍ବାଚନରେ ଗଞ୍ଜାମ ଜିଲ୍ଲାର ଚାଷୀ ମୂଲିଆ, ୪ ଜଣ ଏମ୍.ଏଲ୍.ଏ. ଓ ସାଥୀ ବିଜୟ ଚନ୍ଦ୍ର ଦାସଙ୍କୁ ଏମ୍.ପି. ରୂପେ ନିର୍ବାଚିତ କଲେ । ସର୍ବାଧିକ ରାଜନୈତିକ ଦଳ ହିସାବରେ ଗଞ୍ଜାମ ଜିଲ୍ଲାରେ କମ୍ୟୁନିଷ୍ଟ ପାର୍ଟି ପ୍ରତିଷ୍ଠିତ ହେଲା । ଏହି ନିର୍ବାଚନ ସଂଗ୍ରାମରେ ସାଥୀ ସଦାନନ୍ଦଙ୍କ ଓଜସ୍ୱିନୀ ଭାଷଣ, ପ୍ରଚାର ତରିକା, ସଦ୍ୟ ଜେଲ ମୁକ୍ତ ଗୋବିନ୍ଦ ପ୍ରଧାନଙ୍କ ସଠିକ ପ୍ରୋଗ୍ରାମ୍ କରିବା, ସଭା ସଂଗଠିତ କରିବା ଉଲ୍ଲେଖଯୋଗ୍ୟ ।

## ପାର୍ଟି ସଂଗଠନ ହିସାବରେ ସାଥୀ ସଦାନନ୍ଦ

୧୯୫୨ ସାଧାରଣ ନିର୍ବାଚନ ପରେ ମୁଁ ଥିଲି ଗଞ୍ଜାମ ଜିଲ୍ଲା ପାର୍ଟିର ସଂପାଦକ । ସାଥୀ ସଦାନନ୍ଦ, ହରିବନ୍ଧୁ ବେହେରା ଓ ମୁଁ ଜିଲ୍ଲା କମିଟିର ସେକ୍ରେଟରିଏଟ୍ ସଭ୍ୟ ଥିଲୁ । ଆମ ଜିଲ୍ଲାର ୪ ଜଣ ଏମ୍.ଏଲ୍.ଏ., ଅଥଚ ବ୍ରହ୍ମପୁର ଜିଲ୍ଲା ପାର୍ଟି ଅଫିସ ଘର ଭଡା ଦିଆଯାଇ ପାରିଲା ନାହିଁ । ସାଥୀ ସଦାନନ୍ଦ ଡାକରା ଦେଲେ– 'Let us go with masses'. ହାତ ଛୁନ୍ଦା ଛୁନ୍ଦି ହୋଇ ଆମେ ତିନି ଜଣ ସାତ ଦିନ ଅଜ୍ଞାତବାସରେ ଥିବା ଗାଁ ଗୁଡିକୁ ବୁଲିଲୁ । ଦୁଇ ହଜାର ଟଙ୍କା ଚାନ୍ଦା ସଂଗୃହୀତ ହେଲା । ନଗଦ ଅସୁବିଧା ଗୁଡିକ ଦୂର ହେଲା । ଜିଲ୍ଲା ପାର୍ଟି ସକ୍ରିୟ ହେଲା । ରାଜ୍ୟ ପାର୍ଟିର ସଂପାଦକ ଭାବେ ସେ ଥିଲେ ୧୬ ବର୍ଷ । ଯୁବ ସାଥୀମାନଙ୍କର ପ୍ରମୋଶନ ଉପଯୁକ୍ତ କାର୍ଯ୍ୟରେ ନିଯୁକ୍ତି କରିବା, ସାଥୀ ମାନଙ୍କର ନାମ ଓ ଅବସ୍ଥା ମନେ ରଖିବା, ବିପତ୍ତି ବେଳେ ସେମାନଙ୍କ ପାଖରେ ଛିଡା ହେବା, ଏହାଥିଲା ତାଙ୍କର ଏକ ସଦ୍‌ଗୁଣ । ପ୍ରାରମ୍ଭିକ ଅବସ୍ଥାରେ ସାଥୀମାନଙ୍କର ରାଜନୈତିକ କ୍ଲାସ କରିବା, ପାର୍ଟି ଲାଇନକୁ ପ୍ରାଞ୍ଜଳ ଭାବେ ତୁଳା ଭିଣିଲା ଭଳି ମର୍ମଭେଦ ଭାଷାରେ ବୁଝାଇବାରେ ସେ ଥିଲେ ଅତି ପାରଙ୍ଗମ । ପାର୍ଟିର ଆଭ୍ୟନ୍ତରୀଣ ଗଣତନ୍ତ୍ର ରକ୍ଷା କରିବା, ଦୁଇଟି ଟ୍ରେଣ୍ଡ ମଧ୍ୟରେ ଏକତା ପ୍ରତିଷ୍ଠା କରିବା ପାଇଁ ସେ ବହୁ ସମୟ Compromise ରୋଲ୍ ନେଉଥିଲେ ।

ଭଗବତୀ ଭବନ ନିର୍ମାଣରେ ତାଙ୍କର ଥିଲା ବଡ ଅବଦାନ । ଗୋଟିଏ କାମରେ ଏବଂ ଗୋଟିଏ ଆନ୍ଦୋଳନକୁ ସଫଳ କରିବା ଦିଗରେ ତାଙ୍କର ନିଷ୍ଠା, ଏକାଗ୍ରତା, ଦୃଢତା ଅତୁଳନୀୟ । ସେ ଯେଉଁ କାମ ହାତକୁ ନେଉଥିଲେ ତାହା ନିର୍ମଳ ପରିଷ୍କାର ଭାବେ ସଂପୂର୍ଣ୍ଣ କରୁଥିଲେ । ୫୦ କାମରେ ହାତ ଦେଇ ମୋ' ଭଳି ଛୁନ୍ଦି ହେବା ତାଙ୍କର ଅଭ୍ୟାସ ନଥିଲା ।

## Theory ଓ Practiceର ସମନ୍ୱୟରେ ସାଥୀ ସଦାନନ୍ଦ

୧୯୫୬ ସାଲରେ ସାଥୀ ସଦାନନ୍ଦ ଜିଲ୍ଲା ପାର୍ଟିର ସଂପାଦକ ହେଲେ । ସଦାବେଳିଆ କର୍ମୀଙ୍କ ପାଇଁ ଗଣ ପାର୍ଟି ଚାନ୍ଦା ସଂଗ୍ରହ କରି ସାଥୀ ମାନଙ୍କ ଭତ୍ତାକୁ ନିୟମିତ କରିବା ପାଇଁ ସେ ଯେଉଁ ଉଦ୍ୟମ କରିଥିଲେ ତାହା ଯେପରି ଗୁରୁତ୍ୱପୂର୍ଣ୍ଣ ସେପରି ଶିକ୍ଷଣୀୟ ।

ଶତ୍ରୁର ଆକ୍ରମଣ ଆଗରେ ସେ କେବେ ମୁଣ୍ଡ ନୁଆଁଇ ନଥିଲେ । ହିଞ୍ଜିଳିର ପୁଟିଆପଦର ଠାରେ ସେ ଏବଂ ସାଥୀ ଲକ୍ଷ୍ମଣ ମହାପାତ୍ର ପଞ୍ଚାୟତ ସମିତି ନିର୍ବାଚନ ସଭାରେ ଯୋଗ ଦେଇଥିଲେ । ଆମର ରାଜନୈତିକ ଶତ୍ରୁ ଗୁଣ୍ଡାମାନଙ୍କୁ ଲଗାଇ ସଭାର ଲାଇଟ ଭାଙ୍ଗିଲେ, ମାଇକ ଛଡାଇ ନେଲେ । ସାଥୀ ସଦାନନ୍ଦଙ୍କୁ ମାରି ଦେବାକୁ ଘୋଷଣା କଲେ । ସାଥୀ ସେ ସଭାରୁ ହଟି

ନଥିଲେ । ଅନେକ ନେତା ସଭାରୁ ମଞ୍ଚ ଛାଡି ଚାଲିଗଲେ । ତାଙ୍କ ପିଠିରେ ଗୁଣ୍ଡାଙ୍କ ଯେଉଁ ପ୍ରହାର ସେଥିରେ ରକ୍ତ ନୋଳା ଫାଟି ପଡିଲା । ତଥାପି ସେ ଅନମନୀୟ ଯୋଦ୍ଧା ଭାବରେ ଛିଡା ହୋଇ ରହିଲେ । ଏହି ଆକ୍ରମଣ ବିରୁଦ୍ଧରେ ତହିଁ ଆରଦିନ ସେହି ପୁଟିଆପଦର ତୋଟାରେ ପାଞ୍ଚ ହଜାର ଲୋକଙ୍କ ପ୍ରତିବାଦ ସଭା ହେଲା । ସେତେବେଳେ ଲୋକେ ଘୋଷଣା କଲେ ଶତ୍ରୁର ଦାଉ ସାଧିବା ପାଇଁ । ସେ ତାଙ୍କୁ ସେଥିରୁ ନିବୃତ୍ତ କରାଇଥିଲେ । ଏ ଆକ୍ରମଣ ପରେ ତାଙ୍କର ନାମ ହେଲା "Hill back" ବା ପର୍ବତିଆ ପିଠି ।

## ବାମ ଓ ଗଣତାନ୍ତ୍ରିକ ଶକ୍ତିକୁ ଏକାଠି କରିବାରେ ସାଥୀ ସଦାନନ୍ଦ

ସେ ସବୁ ଦଳର ନେତାମାନଙ୍କ ସହ କାର୍ଯ୍ୟକ୍ରମ ଉପରେ ବିଭିନ୍ନ କୌଶଳ ଅବଲମ୍ବନ କରିପାରୁଥିଲେ । ସେମାନଙ୍କୁ ଐକ୍ୟବଦ୍ଧ ଆନ୍ଦୋଳନ ଭିତରକୁ ଆଣିବାରେ ଦକ୍ଷ ଥିଲେ । ସେ ଥିଲେ ବଡ ବନ୍ଧୁବତ୍ସଳ । ରାଜନୈତିକ ମତପାର୍ଥକ୍ୟ ସତ୍ତ୍ୱେ, ଉତ୍ତମ ବ୍ୟକ୍ତିଗତ ସଂପର୍କ ରକ୍ଷା କରିବାରେ ସେ ଥିଲେ ଆଦର୍ଶ ସ୍ଥାନୀୟ ।

## ବିଧାନସଭାରେ ସାଥୀ ସଦାନନ୍ଦ

୧୯୭୧ ସାଲରେ ସେ ହେଲେ ବିଧାୟକ । ମୁଁ ହେଲି ଏମ୍.ପି. । ପାର୍ଲାମେଣ୍ଟ ଓ ବିଧାନସଭା କାର୍ଯ୍ୟରେ ସଂପର୍କ ରକ୍ଷା କରିବାରେ ଆମେ ପରସ୍ପର ସହଯୋଗୀ ଥିଲୁ । ପାର୍ଲାମେଣ୍ଟରେ Central Sales Tax Bill ସଂଶୋଧନ ପ୍ରସ୍ତାବ ଆସିଲା । ତାଦ୍ୱାରା ଓଡିଶା ୯୦ କୋଟି ଟଙ୍କା Sales Tax ହରାଇବାକୁ ଯାଉଥିଲା । ସେ ଆସେମ୍ବ୍ଲିରେ ପ୍ରସ୍ତାବ ପାଶ୍ କରାଇ କେନ୍ଦ୍ର ଉପରେ ଚାପ ପକାଇଲେ । ସମସ୍ତ କାଗଜପତ୍ର ମୁଁ ଯୋଗାଇ ଦେଲି । ଫଳରେ ଓଡିଶା ଯେଉଁ ୯୦ କୋଟି ହରାଇବାକୁ ଯାଉଥିଲା ତାହା ବନ୍ଦ ହେଲା । ପାର୍ଲାମେଣ୍ଟ ଓ ଆସେମ୍ବ୍ଲି ମଧ୍ୟରେ ସମନ୍ୱୟ ରକ୍ଷା କରିବା ପାଇଁ ସେ ସର୍ବଦା ବ୍ୟଗ୍ରତା ପ୍ରକାଶ କରୁଥିଲେ । ବିଧାନସଭାରେ ସେ ଯେଉଁ ପରମ୍ପରା ଓ ଆଦର୍ଶ ସୃଷ୍ଟି କରିଥିଲେ ତାହା ଅଦ୍ୟାବଧି ପ୍ରେରଣା ଯୋଗାଇ ଦେଉଛି । ସେ ଥିଲେ ଜଣେ ବିଚକ୍ଷଣ ବିଧାୟକ । ଶିକ୍ଷକ ମାନଙ୍କୁ Direct Payment ଦେବା ଉପରେ ସେ ଯେଉଁ ୪୫ ମିନିଟ୍ ଧରି ଦୃଢ଼ ଯୁକ୍ତି ଉପସ୍ଥାପିତ କରିଥିଲେ ତା' ଥିଲା ଅକାଟ୍ୟ ଓ ଓଜସ୍ୱିନୀ । ଏ ସବୁ ସତ୍ତ୍ୱେ ସେ ନିର୍ବାଚନମଣ୍ଡଳୀରେ ଜନ ସଂପର୍କ ରକ୍ଷା ନକରି ଅପଦସ୍ତ ହୋଇଥିଲେ । ରାଜଧାନୀରେ ବସି ଗାଁର ରାସ୍ତାଘାଟ, ସ୍କୁଲ, ଜଳସେଚନ ପ୍ରଭୃତି କ୍ଷେତ୍ରରେ ସେ ସଫଳତା ହାସଲ କରିଥିଲେ ମଧ୍ୟ ଲୋକଙ୍କ ସାଙ୍ଗରେ ନେଇ ସେମାନଙ୍କ ସହଯୋଗରେ ଉକ୍ତ କାମ ହାସଲ କରିବାରେ ବିଫଳ ହୋଇଥିଲେ । କାରଣ ପାର୍ଟିର ସଂପାଦକ ଭାବେ ତାଙ୍କ ଉପରେ ଗୁରୁ ଦାୟିତ୍ୱ ନ୍ୟସ୍ତ ଥିଲା ।

ଜୟଶ୍ରୀ କେମିକାଲ ଶ୍ରମିକଙ୍କ ଉପରେ [illegible] ବହୁଦିନରୁ ଅବାଧ ଶୋଷଣ କରିଥିଲେ । ଶ୍ରମିକଙ୍କର Muster Rollରେ ନାମ ନଥିଲା । ସେତେବେଳେ ସାଥୀ ଲକ୍ଷ୍ମଣ ମହାପାତ୍ର ୭ ଦିନ ଅନଶନରେ ବସିଲେ । ମାଲିକ ସପକ୍ଷରେ ଥିଲେ ପୋଲିସ ଓ ସରକାର । ସାଥୀ ସଦାନନ୍ଦ ଏହି ଅନଶନ ଆନ୍ଦୋଳନ ସପକ୍ଷରେ ସେ ଅଞ୍ଚଳର ହଜାର ହଜାର ଚାଷୀ ମୂଲିଆଙ୍କ ସମର୍ଥନ ସଂଗଠିତ କରିଥିଲେ । ସାଥୀ ଲକ୍ଷ୍ମଣ ମହାପାତ୍ରଙ୍କ ଗଳାରେ ହଜାର ହଜାର ଫୁଲ ମାଳ ପଡୁଥିଲା । ଏହି ଆନ୍ଦୋଳନ ଶେଷରେ ସଫଳ ହୋଇଥିଲା । ଏହି ଆନ୍ଦୋଳନରେ ମୁଁ ମଧ୍ୟ ପ୍ରତିଦିନ ଆସିକାରୁ ଯାଇ ଅଂଶ ଗ୍ରହଣ କରୁଥିଲି । ଏହା ଏକ ବିରାଟ ଗଣଆନ୍ଦୋଳନରେ ପରିଣତ ହେଲା । ଶ୍ରମିକ, କୃଷକ ଏକତା ଦୃଢ଼ୀଭୂତ ହେଲା । ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସେ ଥିଲେ ଜୟଶ୍ରୀ କେମିକାଲ ଶ୍ରମିକ ସଂଘର କାର୍ଯ୍ୟକାରୀ ସଭାପତି ।

## ଆନ୍ତର୍ଜାତିକ ପରିସ୍ଥିତିରେ ମ୍ରିୟମାଣ ସାଥୀ ସଦାନନ୍ଦ

ଗୋର୍ବାଚୋଭଙ୍କ ପେରେସ୍ତ୍ରୋଇକା ଓ ଗ୍ଲାସ୍ତନସ୍ତ ଉପରେ ସେ ଆଗରୁ ସନ୍ଦେହ ପ୍ରକାଶ କରୁଥିଲେ । ଭୁବନେଶ୍ୱର ଠାରେ ବୁଦ୍ଧିଜୀବୀମାନଙ୍କ ଏକ ବିରାଟ ସଭାରେ ସୋଭିଏତ୍‌ରୁ ଆସିଥିବା ଜଣେ ବଡ ନେତା ଭାଷଣ ଦେଉଥିଲେ । ସାଥୀ ସଦାନନ୍ଦ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯେ କି ନିର୍ଭୀକ ଭାବେ ପ୍ରଶ୍ନ କରିଥିଲେ ଯେ ବର୍ତ୍ତମାନର ନେତୃତ୍ୱ ସମାଜବାଦକୁ ସଠିକ ମାର୍ଗରେ ପରିଚାଳିତ କରିବା ପାଇଁ ଗ୍ୟାରେଣ୍ଟି କ'ଣ ? ତା'ର ସନ୍ତୋଷଜନକ ଉତ୍ତର ଆସିପାରି ନଥିଲା ।

ଶେଷରେ ତାଙ୍କ ସଂକ୍ରାନ୍ତରେ ଏତିକି କହି ଶେଷ କରୁଛି ।

He was intelegent enough to Concre, Couragious enough to will, powerful enough to compel, Firm enough to assert, able enough to appreciate. He was committed to Scientific Socialism.-

୪୬ ବର୍ଷ ଧରି ଆମେ ଯେପରି ପରସ୍ପରକୁ ଜଣାଶୁଣା ସେପରି ଭାବେ ଆନ୍ଦୋଳନରେ ଅଭିଜ୍ଞତା ହାସଲ କରିଛୁ । ଦାରିଦ୍ର୍ୟର କଷାଘାତରେ ସେ କେବେ ଦବି ଯାଇ ନଥିଲେ । ରୋଗ ତାଙ୍କ ମନୋବଳକୁ ଭାଙ୍ଗି ପାରି ନଥିଲା । ସେ ଥିଲେ ଅଦମ୍ୟ । ପ୍ରତିଦିନ ମରଣ ସହ ତାଙ୍କର ସଂଗ୍ରାମ ଚାଲିଥିଲା । ଆଜି ମନରେ କୋହ ଉଠୁଛି । ସେ ବସି ଥାନ୍ତେ ଆଉ ମୁଁ ତାଙ୍କୁ ଦେଖୁଥାନ୍ତି ।

**ସେ ଆଜି ଶହୀଦ**

**ସେ ଆଜି ଅମର**

# ଜୀବନ ସ୍ମୃତିରୁ ଖିଏ

ବିଶ୍ୱନାଥ ସାହୁ

୧୯୪୫ ମସିହା, ୨ୟ ମହାଯୁଦ୍ଧ ଶେଷ ହୋଇଥିଲେ ମଧ୍ୟ ଯୁଦ୍ଧୋତ୍ତର, ବିଭିଷିକାର ଭୟାବହତା ପୃଥିବୀ ବକ୍ଷରେ ଛାଇ ହୋଇ ରହିଥାଏ । ଆମ ଜାତୀୟ ନେତାମାନେ ଆସ୍ତେ ଆସ୍ତେ ବ୍ରିଟିଶ୍ କାରାଗାରରୁ ମୁକ୍ତି ପାଉଥାନ୍ତି । ଫାସିଷ୍ଟ ହିଟଲର ଉପରେ ସୋଭିଏତ୍ ଲାଲ ବାହିନୀର ପ୍ରଚଣ୍ଡ ଆଘାତ ଫଳରେ ସାରା ବିଶ୍ୱ ଫାସିଜିମ୍ କବଳରୁ ରକ୍ଷା ପାଇଥାଏ- ଜର୍ମାନୀର ଅର୍ଦ୍ଧେକ ଭାଗରେ ପୂର୍ବ ଜର୍ମାନୀ ବା ଜର୍ମାନୀ ଗଣତାନ୍ତ୍ରିକ ରିପବ୍ଲିକ ପ୍ରତିଷ୍ଠା ହୋଇ ସମାଜବାଦୀ ଶାସନ ପ୍ରତିଷ୍ଠା ଲାଗି ଋଷର ଲାଲଫୌଜ ଡେରା ପକାଇ ଜଗୁଆଳ ଥିବା ବେଳେ ଦୁନିଆର ବହୁ ପରାଧୀନ ଓ ଉପନିବେଶ ଦେଶରେ ଜାତୀୟ ମୁକ୍ତି ପାଇଁ ସ୍ୱାଧୀନତା ସଂଗ୍ରାମ ଜୋରଦାର ଭାବେ ଚାଲିଥାଏ । ଭାରତ, ଚୀନ୍, ବର୍ମା, ଇଣ୍ଡୋନେସିଆ ପ୍ରଭୃତି ପ୍ରାଚ୍ୟ ଜଗତର ଜାତୀୟ ମୁକ୍ତି ଆନ୍ଦୋଳନ ଓ ସେଥିଲାଗି ସୋଭିଏତ୍ ଋଷର ଅକୁଣ୍ଠିତ ସାହାଯ୍ୟ ସାମ୍ରାଜ୍ୟବାଦୀ ଶିବିରରେ ଭୟାବହ ବିସ୍ମୟ ଓ ଭୟ ସଞ୍ଚାର କରିଥିଲା ।

ଆମ ଦେଶର ଜାତୀୟ ନେତାମାନଙ୍କୁ ଖଲାସ କରିବା, ଆଇ.ଏନ୍.ଏ., ଆର.ଆଇ.ଏନ୍. ମୁକ୍ତି ଯୋଦ୍ଧା ମାନଙ୍କୁ ଖଲାସ କରିବା, ଜାତୀୟ ମୁକ୍ତି ଆନ୍ଦୋଳନରେ ଅଧିକ ଝାସ ଦେବା ପ୍ରଭୃତି ପାଇଁ ଅ.ଭା. ଛାତ୍ର ସଂଘ ନେତୃତ୍ୱକାରୀ ଭୂମିକା ଗ୍ରହଣ କଲା । ଏହି ମହାସମର ବେଳେ କଂଗ୍ରେସର ତ୍ରିରଙ୍ଗି ପତାକା ମୁସ୍‌ଲିମଲିଗ୍ ପତାକା ଓ କମ୍ୟୁନିଷ୍ଟ ପାର୍ଟିର ଲାଲ ପତାକା ଏକାଠି ହୋଇ ପଡିଲେ । ବ୍ରିଟିଶ୍ ଶାସନ ଲୋପ ପାଇଁ ବମ୍ବେ ସହରରେ ଯେତେବେଳେ ରୟାଲ ଇଣ୍ଡିଆନ୍ ନାଭି ୟୁନିଅନ୍ ଜାହାଜକୁ ଫୋପାଡି ଜାତୀୟ ପତାକା ଉତ୍ତୋଳନ କଲେ ଏବଂ ବ୍ରିଟିଶ୍ ବନ୍ଧୁକ ଭାରତୀୟ ମୁକ୍ତି ଯୋଦ୍ଧାଙ୍କ ପାଇଁ ଆଇ.ଏନ୍.ଏ. ମାନଙ୍କୁ ଖଲାସ କରିବା ପାଇଁ ସେ କହିଲେ ଦିଲ୍ଲୀ, କଲିକତା, ମାନ୍ଦ୍ରାଜ ସହରରେ ଯେତେବେଳେ ଜନସାଧାରଣ ମୁକ୍ତିର ମଶାଲ ଧରି ପଦାକୁ ଆସିଗଲେ ସେତେବେଳେ ଆଉ ଦଳ, ପତାକା ଓ ସଂପ୍ରଦାୟର ପରାଭିନ୍ନ ନଥିଲା । ସାଂପ୍ରଦାୟିକତାବାଦୀମାନେ ବ୍ରିଟିଶର ଡିଭାଇଡ ଏଣ୍ଡ ରୁଲ ନୀତିର ବଶବର୍ତ୍ତୀ ହୋଇ ସାଂପ୍ରଦାୟିକତା ବିଷ ସୃଷ୍ଟି କରୁଥିଲେ ହେଁ, ଜାତୀୟ ମୁକ୍ତି ସଂଗ୍ରାମରେ କି ହିନ୍ଦୁ, କି ମୁସ୍‌ଲିମ୍, କି ଶିଖ ସମସ୍ତେ ଏକ ହୋଇ ବ୍ରିଟିଶ୍ ସାମ୍ରାଜ୍ୟବାଦକୁ ଦେଶରୁ ହଟାଇ ସ୍ୱାଧୀନତା ହାସଲ ପାଇଁ ଲାଗି ପଡିଲେ ।

ଦେଶର ଏଇ ପରିପ୍ରେକ୍ଷୀରେ ଗଞ୍ଜାମ ଜିଲ୍ଲାରେ ସାଥୀ ସଦାନନ୍ଦ ମହାନ୍ତି ଛାତ୍ର ନେତା ଭାବେ ଛାତ୍ର ସଂଗଠନର ପୁରୋଭାଗରେ ରହିଥିଲେ ।

ଛାତ୍ର ସଂଘର ତତ୍କାଳୀନ ନେତା ସତ୍ୟବାଦୀ ମିଶ୍ର (ପରେ ଅଧ୍ୟାପକ ଓ ଅଧ୍ୟକ୍ଷ ହେଲେ- ବର୍ତ୍ତମାନ ସେ ଆଉ ଇହ ଜଗତରେ ନାହାନ୍ତି) ଜେଲରୁ ଖଲାସ ହେବା ପରେ ବ୍ରହ୍ମପୁର, ଆସ୍କା, ପୁରୁଷୋତ୍ତମପୁର ଆସି ଛାତ୍ର ସଂଘ ଗଠନ କରିବା ଦିଗରେ ଲାଗି ପଡିଲେ । ରାଜ୍ୟ କେନ୍ଦ୍ରରୁ ରାମଚନ୍ଦ୍ର ରାମ, ଗଙ୍ଗାଧର ରଥ, ମନମୋହନ ମିଶ୍ର, ଦୁର୍ଗା ଚରଣ ମହାନ୍ତି, ନିରୂପମା ରଥ, ଜଗତକୃଷ୍ଣ ଦାସ ନରସିଂହ ତ୍ରିପାଠୀ ପ୍ରମୁଖ ଛାତ୍ର ନେତା ଘନିଷ୍ଠ ସଂପର୍କ ରଖିଲେ । ବ୍ରହ୍ମପୁରରେ ସଦାନନ୍ଦ ମହାନ୍ତି ରାମମୋହନ ଜେନା, କିଶୋର ଚନ୍ଦ୍ର ରଥ, ଶ୍ୟାମସୁନ୍ଦର ପାଢୀ ପ୍ରଭୃତିଙ୍କୁ ନେଇ ଶଶୀଭୂଷଣ ପଟ୍ଟନାୟକ ଛାତ୍ର ସଂଘର ଶାଖା ଗଠନ ହେଲା । ପୁରୁଷୋତ୍ତମପୁର ହାଇସ୍କୁଲରେ ଆମେ କେତେ ଜଣ ଛାତ୍ର, ଛାତ୍ର ସଂଘର ଶାଖା ଗଠନ କଲୁ । କମ୍ୟୁନିଷ୍ଟ ନେତା ବିଜୟ ଚନ୍ଦ୍ର ଦାଶ ଛାତ୍ର ଆନ୍ଦୋଳନ, ଛାତ୍ର ସଂଗଠନକୁ ପ୍ରତ୍ୟକ୍ଷ ନେତୃତ୍ୱ ଦେଲେ । କହିବା ବାହୁଲ୍ୟ ଯେ ଛାତ୍ର ସଂଘ ବ୍ରହ୍ମପୁରର ପ୍ରମୁଖ ଯୁଦ୍ଧୋତ୍ତର ଜନ ଆନ୍ଦୋଳନର ଓ ଜନ ଦାବୀର ପ୍ରଧାନ ଉତ୍ସ ହୋଇ ଗଢି ଉଠିଲା । ପୁରୁଷୋତ୍ତମପୁରକୁ କେନ୍ଦ୍ର କରି ଆସ୍କା, ଭଞ୍ଜନଗର ଓ ଛତ୍ରପୁର ହାଇସ୍କୁଲରେ ଅଖିଳ ଭାରତ ଛାତ୍ର ସଂଘର ଶାଖାମାନ ଗଠନ ହେଲା ।

ଜାତୀୟ ନେତାମାନଙ୍କୁ ଖଲାସ, ଦୁର୍ଭିକ୍ଷ ଦାଉରୁ ବୁଭୁକ୍ଷୁ ଜନଙ୍କୁ ରିଲିଫ ସୁବିଧା ଓ ସୁଲଭ ଦରରେ ଛାତ୍ର ମାନଙ୍କୁ କାଗଜ ଓ ବହି ଯୋଗାଇ ଦେବା, ଗୁରୁ, ଗାର୍ଡି ଓ ଗାର୍ଡିଅନ୍ ମାନଙ୍କ ନିପଟ ସାମନ୍ତବାଦୀ ଚିନ୍ତାଧାରା ଓ କଷଣରୁ ଛାତ୍ର ସମାଜକୁ ମୁକ୍ତ, ମେକାଲେ ପ୍ରଣାଳୀ, ଗୋଲାମୀ ଶିକ୍ଷା ପ୍ରଣାଳୀ ପରିବର୍ତ୍ତେ ସ୍ୱାଧୀନ ବୈଜ୍ଞାନିକ ଶିକ୍ଷାର ପ୍ରସାର ପ୍ରଭୃତି ମୁଖ୍ୟତଃ ଛାତ୍ର ସଂଘର ଦାବୀ ନେଇ ଜିଲ୍ଲା ଛାତ୍ର ସଂଘ ସଂଗଠିତ ହେବାକୁ ଲାଗିଲା । ଶାନ୍ତି-ପ୍ରଗତି ଓ ସ୍ୱାଧୀନତାର ପତାକା ତଳେ ହଜାର ହଜାର ଛାତ୍ର ଜିଲ୍ଲାର ପ୍ରାୟତଃ ସବୁ ଶିକ୍ଷା ଅନୁଷ୍ଠାନରେ, ସଂଗଠିତ ହେବାକୁ ଲାଗିଲେ ଏବଂ ଏହି ଆନ୍ଦୋଳନର ଅଗ୍ରଭାଗରେ ଥିଲେ ସାଥୀ ସଦାନନ୍ଦ ମହାନ୍ତି ।

୧୯୪୫ ସାଲ (ମାସ ଓ ତାରିଖ ମନେ ନାହିଁ) ବ୍ରହ୍ମପୁର ଟାଉନ୍ ହଲ୍‌ରେ ଛତ୍ର ସଂଘର ପ୍ରଥମ ସମ୍ମିଳନୀ ଅନୁଷ୍ଠିତ ହୁଏ । ଏହି ସମ୍ମିଳନୀକୁ ଉଦ୍‌ଘାଟନ ଓ ସଭାପତିତ୍ୱ କରନ୍ତି ଜେଲରୁ ସଦ୍ୟ ମୁକ୍ତ ନେତା ଡକ୍ଟର ହରେକୃଷ୍ଣ ମହତାବ ଓ ବିଶ୍ୱନାଥ ଦାସ । ଏଇ ଅବସରରେ ଆମେ କେତେଜଣ ଛାତ୍ର ପ୍ରତିନିଧି ପୁରୁଷୋତ୍ତମପୁର ହାଇସ୍କୁଲରୁ ପାଦରେ ଚାଲି ଚାଲି ଏହି ସମ୍ମିଳନୀରେ ଯୋଗ ଦେଇଥିଲୁ । ଏଇ ସମ୍ମିଳନୀ ମଣ୍ଡପରେ

ଆମର ସଂପର୍କ ନାବିଡ ହେବାକୁ ଲାଗିଲା । ଏଠାରେ ବହୁ ଆଡମ୍ବରପୂର୍ଣ୍ଣ ସମ୍ମିଳନୀ ସମାହିତ ହୋଇଥିଲା । ଛାତ୍ର ସଂଘର ଆଭିମୁଖ୍ୟ, ଜାତୀୟ ମୁକ୍ତି ଆନ୍ଦୋଳନରେ ଅଖିଳ ଭାରତ ଛାତ୍ର ସଂଘର ଗୌରବମୟ ଭୂମିକା, ଉପସ୍ଥିତ ରାଜନୈତିକ ପରିସ୍ଥିତି ଓ ଛାତ୍ର ମାନଙ୍କ କାର୍ଯ୍ୟକ୍ରମ ଉପରେ ତତ୍କାଳୀନ ଛାତ୍ର ନେତା ସାଥୀ ଦୁର୍ଗାଚରଣ ମହାନ୍ତି, ମନମୋହନ ମିଶ୍ର, ଗଙ୍ଗାଧର ରଥ ପ୍ରମୁଖ ଆମ୍ଭମାନଙ୍କ କ୍ଲାସ କଲେ ଏବଂ ସମ୍ମିଳନୀରେ ଉଦ୍‌ବୋଧନ ଦେଲେ । ଛାତ୍ର ସଂଘ ଜିଲ୍ଲାର ବ୍ୟାପକ ଓ ସୁଦୃଢ଼ ଭାବେ ସଂଗଠିତ ହେବାକୁ ଲାଗିଲା ଏବଂ ଅଧିକରୁ ଅଧିକ ପରିମାଣରେ ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଲା ।

ଏତିକିବେଳେ ବ୍ରହ୍ମପୁର ସହରରେ ରଜକ ମିଲ ଶ୍ରମିକ ସଂଘ, ରାଜ ମିସ୍ତ୍ରୀ ସଂଘ, ଗୁଆ କଟାଳୀ ସଂଘ, ବୁଣାଳୀ ସଂଘ ପ୍ରଭୃତି ଶ୍ରମିକ ସଂଗଠନ ଗଢ଼ି ଉଠିଲା । ଏସବୁର ପୁରୋ ଭାଗରେ ଥିଲେ ତତ୍କାଳୀନ କମ୍ୟୁନିଷ୍ଟ ନେତା, ବାଗ୍ମୀ, ଚିନ୍ତାଶୀଳ ସାଥୀ ବିଜୟ ଚନ୍ଦ୍ର ଦାସ, ସ୍ୱାଧୀନତା ପ୍ରାକ୍ କାଳରେ ଜିଲ୍ଲା ବ୍ୟାପୀ କୃଷକ ଆନ୍ଦୋଳନ ଗଢ଼ି ଉଠିଲା । ବର୍ବର ମୁସ୍ତାଦାରୀ ପ୍ରଥାର ବିଲୋପ, ବିନା କ୍ଷତିପୂରଣରେ ଜମିଦାର ପ୍ରଥାର ଉଚ୍ଛେଦ । ଚାଷୀଙ୍କ ଜମିରେ ନଗଦ ଖଜଣା ଧାର୍ଯ୍ୟ, ଲଙ୍ଗଳ ଯାର, ଜମି ତାର ପ୍ରଭୃତି ଦାବୀ ନେଇ ବିରାଟ କୃଷକ ଆନ୍ଦୋଳନ ଦେଖାଦେଲା । ଏଇସବୁ ଆନ୍ଦୋଳନର ପୁରୋଭାଗରେ ଥିଲେ ପ୍ରଖ୍ୟାତ କୃଷକ ନେତା ସାଥୀ ଗୋବିନ୍ଦ ପ୍ରଧାନ, ସାଥୀ ହରିହର ଦାସ, ସାଥୀ ବିଜୟ ଚନ୍ଦ୍ର ଦାସ, ସାଥୀ ରାଧାକୃଷ୍ଣ ପ୍ରଧାନ, ସାଥୀ ଜୁର ପାତ୍ର, ସାଥୀ ଅପନ୍ନା ପାତ୍ର, ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ, ସାଥୀ ସୂର୍ଯ୍ୟ ନାରାୟଣ ଆଚାରୀ ପ୍ରମୁଖ । ଜିଲ୍ଲା ବାହାରୁ ସାଥୀ ଗୁରୁଚରଣ ପଟ୍ଟନାୟକ, ସାଥୀ ସାଧୁ ଚରଣ ମହାନ୍ତି, ସାଥୀ ମୋହନ ଦାସ ପ୍ରମୁଖ ନେତୃବର୍ଗ ପ୍ରତ୍ୟକ୍ଷ ନେତୃତ୍ୱ ଦେଲେ । ଏ ସମସ୍ତ ଆନ୍ଦୋଳନର ପ୍ରଭାବ ଛାତ୍ର ସମାଜ ଉପରେ ନିଶ୍ଚିତ ଭାବେ ପଡିଲା ଏଥିରେ ସନ୍ଦେହର ଅବକାଶ ନାହିଁ ।

ଏତିକିବେଳେ ଜିଲ୍ଲାରେ କମ୍ୟୁନିଷ୍ଟ ପାର୍ଟିର ଏକ କ୍ଷୁଦ୍ର କମିଟି ଗଠନ ହୋଇଥିଲା । ସାଥୀ ହରିହର ଦାସଙ୍କ ସାଂଗଠନିକ ନିପୁଣତା, ସାଥୀ ଗୋବିନ୍ଦ ପ୍ରଧାନଙ୍କ ଗଣ ପ୍ରଭାବ୍ ଏବଂ ସାଥୀ ବିଜୟ ଚନ୍ଦ୍ର ଦାସଙ୍କ ବାଗ୍ମୀତା, ପାଣ୍ଡିତ୍ୟ ଓ ସମାଜବାଦୀ ନୂତନ ଦିଗ୍‌ଦର୍ଶନ ବହୁ ପରିମାଣରେ ଛାତ୍ରମାନଙ୍କୁ ଆକୃଷ୍ଟ କଲା । ୧୯୮୬ ସମ୍ଭବତଃ ଏପ୍ରିଲ୍ କିମ୍ବା ଜୁନ୍ ମାସରେ ଏକା ଦିନରେ ଆମେ ୩ ଜଣ କମ୍ୟୁନିଷ୍ଟ ପାର୍ଟି ଶପଥ ପତ୍ରରେ ଦସ୍ତଖତ ଦେଲୁ । ସେମାନେ ହେଲେ ସଦାନନ୍ଦ, ସାଥୀ ହରିବନ୍ଧୁ ଓ ଲେଖକ ସାଥୀ ବିଶ୍ୱନାଥ । ବହୁ ବର୍ଷ ଆଗରୁ ୧୯୩୯ରୁ ପୁରୁଷୋତ୍ତମପୁର ହାଇସ୍କୁଲରେ ଅଧ୍ୟୟନ ବେଳେ ପରସ୍ପର ପରିଚୟ ଓ ଜଣାଶୁଣା ଥିଲା । ଯାହାକି ୧୯୪୫ ବ୍ରହ୍ମପୁର ଛାତ୍ର ସମ୍ମିଳନୀ ବେଳେ ଦୃଢ଼ତର ହୋଇଥିଲା । ସଦାନନ୍ଦ ମୋ ଠାରୁ ୨ଟି ଶ୍ରେଣୀ ଆଗରେ ପଢୁଥିଲେ । ସେ ଥର୍ଡ ଫାରମ (ଅଧୁନା ୮ମ ଶ୍ରେଣୀ) ପଢୁଥିଲା ବେଳେ ମୁଁ ଫାଷ୍ଟ ଫାରମ (୬ଷ୍ଠ ଶ୍ରେଣୀ)ରେ ପଢୁଥିଲି । ସେ ଫୋର୍ଥ ଫାରମ ପରେ ଛତ୍ରପୁର ଚାଲିଯାଇଥିଲେ ଏବଂ ତାପରେ ବ୍ରହ୍ମପୁର ଖଲ୍ଲିକୋଟ କଲେଜରେ ଆସି ପଢିଲେ ।

ବର୍ତ୍ତମାନ ୧୯୪୬ରେ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ବିଧିବଦ୍ଧ ସମ୍ମିଳନୀ ଆସ୍କାରେ ଅନୁଷ୍ଠିତ ହେଲା । ସାଥୀ ରାମକୃଷ୍ଣ ପତି ଉପସ୍ଥିତ ରହି ପରିଚାଳନା କରୁଥିଲେ । ସେଇ ଦିନରୁ ସାଥୀ ସଦାନନ୍ଦ କଲେଜରେ ଅଧ୍ୟୟନ କରୁଥିବା ସହ ଜନସାଧାରଣଙ୍କ ସମସ୍ତ ଆନ୍ଦୋଳନ ସହ ଜଡିତ ହେଲେ । ତାଙ୍କର ନିର୍ଭୀକ ଓ ଅକାଟ୍ୟ ଯୁକ୍ତି, ବିଚକ୍ଷଣ ବକ୍ତୃତା ଜନସାଧାରଣ ବିଶେଷକରି ଯୁବକମାନଙ୍କୁ ବହୁଳଭାବେ ଆଦୃତ କରୁଥିଲା ।

ଏଣୁ ସାଥୀ ସଦାନନ୍ଦଙ୍କ ଜୀବନ ସ୍ମୃତି କହିଲେ ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକଳାପ ସହ ମୋଟାମୋଟି ଭାବେ ଜଡିତ । ଗଞ୍ଜାମ ପାର୍ଟି ବହୁ ଉତ୍‌ଥାନ ପତନ ଦେଇ ଗତି କରିଛି, ବହୁ ଘାତ-ପ୍ରତିଘାତର ସମ୍ମୁଖୀନ ହୋଇଛି, ବହୁ ଆନ୍ଦୋଳନ ବିଜୟମଣ୍ଡନ କରିଛି- ସେସବୁ ସହ ସାଥୀ ସଦାନନ୍ଦ ପ୍ରତ୍ୟକ୍ଷ ଭାବେ ଜଡିତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏପରିକି ପାର୍ଟି ଯେତେବେଳେ ଯେଉଁ ନିଷ୍ପତ୍ତି କରିଛି ତାହା ନିଷ୍ଠାର ସହ ସେ କାର୍ଯ୍ୟ କରିବାକୁ କେବେ ପଛାଇ ନାହାନ୍ତି । ନିଳଗିରୀର ସଶସ୍ତ୍ର ସଂଗ୍ରାମରେ ଯୋଗ ଦେବା ଠାରୁ ଜୟଶ୍ରୀର ଶ୍ରମିକ ଆନ୍ଦୋଳନ ଯାଏଁ ସେ କେବେ ପଶ୍ଚାଦ୍‌ଗାମୀ ହୋଇନାହାନ୍ତି । ଗଞ୍ଜାମ ଜିଲ୍ଲାରୁ ରାଜ୍ୟ ପାର୍ଟି ସଂପାଦକ ଯାଏଁ ସେ ଦାୟିତ୍ୱ ନେଇଥିଲେ । ଦେଶରେ ଏକ ନୂତନ ସମାଜ-ଶୋଷଣହୀନ ସମାଜ-ସମାଜବାଦୀ ଦୁନିଆ ଗଠନ ପାଇଁ ନିଜର ଜୀବନକୁ ସେ ତିଳ ତିଳ କରି ଉତ୍ସର୍ଗ କରିଦେଇଥିଲେ ।

ଏପରି ଏକ ଉତ୍ସର୍ଗୀକୃତ ଜୀବନର ଅବସାନ ହେଲା ଏଇ ନଭେମ୍ବର ୧୬ ତାରିଖରେ । ସେ ଦୀର୍ଘଦିନ ଧରି ଜୀବନ ସହ ସଂଗ୍ରାମ କରି ଆସୁଥିଲେ । ପରିଶେଷରେ ପରାଜୟ ଘଟିଲା । ଓଡିଶା ବିଶେଷକରି ଗଞ୍ଜାମ ଜିଲ୍ଲା ଯେଉଁଠି ସେ ସ୍ୱାଧୀନତା ସଂଗ୍ରାମ ଠାରୁ ଛାତ୍ର ଆନ୍ଦୋଳନ, ଶ୍ରମିକ ଆନ୍ଦୋଳନ, କୃଷକ ଆନ୍ଦୋଳନ ପ୍ରଭୃତି ଲାଗି ଜୀବନଦାନ କରିଥିଲେ, ସେଇ ମାଟିରୁ ଏକ ଦୀପ ଶିଖା ଲିଭିଗଲା- ଲିଭିଗଲା ଚୀର ଦିନ ପାଇଁ- ତାଙ୍କର ସମସ୍ତ ସାଥୀ, ଆତ୍ମୀୟ, ବନ୍ଧୁ ଓ ଜନତାଙ୍କୁ ବିଦାୟ ଦେଇ । ଏହାହିଁ ତ' ଜୀବନ । ଜୀବନ ଯେଉଁଠାରେ ସେଠାରେ ମୃତ୍ୟୁ ଅନିର୍ବାର୍ଯ୍ୟ । ଆମ ପାର୍ଟି ତା'ର ଜଣେ ବଳିଷ୍ଠ ନେତାଙ୍କୁ ହରାଇଲା । ମୁଁ ଆଜି ତାଙ୍କର ଏକାଦଶାହ ଦିନରେ ମୋର ବାଲ୍ୟ ସାଥୀ, ସହକର୍ମୀ ଓ ବନ୍ଧୁଙ୍କୁ ହରାଇଲି । ତାଙ୍କର ସେଇ ମହାନ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜଣାଇବା ଛଡା ଆଉ କଣ କରିପାରିବି ।

# ସବାର ଉପରେ ମାନୁଷ ସତ୍ୟ

**ଶଶିଭୂଷଣ ମିଶ୍ର**

ଗଛ ଡାଳରୁ ଶେଫାଳି ଝରୁଥିଲେ ଥିରି ଥିରି, ସଦାନନ୍ଦଙ୍କ ଶରୀର ଉପରେ, ଭଗବତୀ ଭବନ ଦାଣ୍ଡ ଦୁଆରେ । ଅନେକ ସକାଳର କଅଁଳ ଖରାରେ ବସି ଝରା ଶେଫାଳିର ମହକ, ପୁଲକ ମୁଁ ଉପଭୋଗ କରିଛି । ଉପଭୋଗ କରିଛି ତା ନରମ ପାଖୁଡ଼ାଗୁଡିକର ସ୍ୱଚ୍ଛତା, ଶୁଭ୍ରତା, ଆଉ ତା ଡେମ୍ଫ ବାସନ୍ତୀ ରଙ୍ଗର ନମ୍ର ଶୋଭା । ତାଙ୍କ ବାସ୍ନାର ମୃଦୁ ଆମୋଦ ଆଘ୍ରାଣରେ ମୁଁ କେତେଥର ବିଭୋର ହୋଇଛି । ଭୂଇଁ ଉପରେ ଝରି ପଡିବାରେ ହିଁ ଶେଫାଳିର ହସ ।

ଆଜି କିନ୍ତୁ ଶେଫାଳି କାନ୍ଦି କାନ୍ଦି ଝରି ପଡୁଥିଲା । ପ୍ରାଣର ପରାସ ସହି ନପାରି ଲୋଟି ଯାଉଥିଲା ସଦାନନ୍ଦଙ୍କ ଦେହରେ, ତାଙ୍କ ଚାରିପାଖ ଭୂଇଁରେ । ସ୍ୱଚ୍ଛତା, ଶୁଭ୍ରତା, ନମ୍ରତା, ଆମୋଦ ଓ ଆବେଗର ଏକ ଜୀବନ ସ୍ରୋତ ମହାକାଳ ସହିତ ମିଶି ଯାଉଥିଲା ବେଳେ, ଶେଫାଳି ଯେପରି ତାକୁ ଆଲିଙ୍ଗନ କରି କହୁଥିଲା "ନା ନା, ତୁମେ ଯାଅ ନାହିଁ । ଆଜିର ଦୁନିଆଟାରେ ପରା ଭଲ ମଣିଷଙ୍କର ବଡ ଅଭାବ । ତୁମେ ଯାଅ ନାହିଁ !" ମନେ ପଡିଲା, ଆଚାର୍ଯ୍ୟ ମହାଶୟ ସମସ୍ତଙ୍କୁ ଗୋଟିଏ ପଦ ଆଶୀର୍ବାଦ କରୁଥିଲେ– "ଭଲ ମଣିଷ ହୁଅ !"

ଆମ ସମସ୍ତଙ୍କ ସ୍ୱତନ୍ତ୍ର ପୁଷ୍ପାଞ୍ଜଳିର ବର୍ଣ୍ଣବଡିମାକୁ ଏକାକାର କରି ଶେଫାଳି ଗୁଡିକର ଛିଟ ଆସ୍ତରଣ ଏକ ସସ୍ନେହ ସମବେତ ଶ୍ରଦ୍ଧାଞ୍ଜଳିରେ ରୂପାୟିତ କରୁଥିଲା । ଅନ୍ତତଃ ସେହିପରି ଲକ୍ଷ୍ୟ କରୁଥିଲି ମୁଁ । ସେହି ଶେଫାଳିମାନେ ସତେ ଅବା ସମବେତ ସମସ୍ତ ଅନୁରାଗୀଙ୍କ ବ୍ୟକ୍ତିଗତ ଅବା ଗୋଷ୍ଠୀଗତ ଗୌରବବୋଧକୁ ସେଦିନ ଏକ ସମଷ୍ଟିବୋଧର ପ୍ରଶାନ୍ତ କ୍ଷୀରାବ୍ଧିରେ ତନ୍ମୟ କରି ଦେଉଥିଲେ ଏବଂ ସେଇ ସ୍ନେହାଶ୍ରୁର କ୍ଷୀରାବ୍ଧିରେ ଅନନ୍ତ ଶୟନରେ ଥିଲେ ସଦା-ଆନନ୍ଦ ସଦାନନ୍ଦ । ଶେଫାଳିଟିଏ ଆମକୁ ସୂଚାଇ ଦେଉଥିଲା, "ଏହି ଉଦାର, ଉର୍ଦ୍ଧ୍ୱଚେତା ସଦାନନ୍ଦ ପରି ହୁଅ, ଉର୍ଦ୍ଧ୍ୱରୁ ଆହୁରି ଉର୍ଦ୍ଧ୍ୱକୁ ଉଠ ସମଷ୍ଟି ପାଇଁ ସନ୍ନ୍ୟାସ ନିଅ; ପୁଣି ଉର୍ଦ୍ଧ୍ୱରୁ ଭୂଇଁରେ ଝରି ସଭ୍ୟକୁ ମହକାଅ; ଯେଉଁଠି ତୁମେ ସବୁ ସ୍ୱର୍ଗ ଓ ମର୍ତ୍ତ୍ୟର ମହାସଙ୍ଗମ ସୃଷ୍ଟି କରିପାରିବ । ମଣିଷକୁ ଏଇ ମର୍ତ୍ତ୍ୟରେ ହିଁ ଦେବଲୋକରେ ବସାଇ ଦେଇପାରିବ ।"

ତେଣୁ କବି ଗୁରୁ ଗାଇଛନ୍ତି, "ସବାର ଉପରେ ମାନୁଷ ସତ୍ୟ, ତାହାର ଉପରେ ନାଇଁ !" ଏଇ ମଣିଷ ମର୍ତ୍ତ୍ୟକୁ କରିପାରେ ସ୍ୱର୍ଗ ଅବା ନରକ । ତେଣୁ ମଣିଷ ମଣିଷ ଭିତରେ କର୍ମଭେଦରେ ଅନେକ ଫରକ । ଫରକ ଭେଦକୁ ଭୁଲିଗଲେ ନରକ ଆମ ଭିତରୁ ଆପଣା ଛାଏଁ ଲୋପ ପାଇଯାଏ । ଯେଉଁ ମଣିଷ ମଣିଷକୁ ଭଲ ପାଇ ଜାଣେ ତା' ପାଇଁ ଏଇ ଧରାର ପ୍ରତ୍ୟେକ ଦ୍ୱାର ସ୍ୱର୍ଗଦ୍ୱାର । ଯେଉଁ ମଣିଷ ଆପଣା ଗୌରବବୋଧରେ ଅନ୍ୟ ଠାରୁ ନିଜକୁ ପୃଥକ ରଖିବାର ଅହଂକାର ରଖେ, ପ୍ରତ୍ୟକ୍ଷ ଅବା ପରୋକ୍ଷରେ, ସେ ଏଇଠି ନରକ ସୃଷ୍ଟି କରେ ।

ଶେଫାଳି ଉର୍ଦ୍ଧ୍ୱରୁ ତଳକୁ ଝରି ଧରାକୁ ସୁଶୋଭିତ କରେ । ଚଉଦିଗ ମହକାଏ । କ୍ଷଣକ ପାଇଁ ହେଲେ ବି, ଏଇ ତା'ର ମହତ୍ତ୍ୱ । ଅଳ୍ପକେ ମଉଳି ମାଟିରେ ମିଶିଯାଏ ସେ, କିନ୍ତୁ ମହତ ହରାଏ ନାହିଁ । ବନ୍ଧୁ ସଦାନନ୍ଦ ! ସ୍ୱର୍ଗଦ୍ୱାରକୁ ଯିବା ଆଗରୁ ଶେଫାଳି ଗଛର ଛାଇ ତଳେ ତୁମର ଶେଷ ଶଯ୍ୟା କଣ କେବଳ ଆକସ୍ମିକ ? ନା' ତୁମେ ଦେଇଗଲ ତୁମ ଜୀବନ ଆଦର୍ଶର ଶେଷ ସଙ୍କେତ ଏଇଠି ? କହିଗଲ, "ଏଇ ଶେଫାଳି ପରି ହୁଅ ! ସବୁ ପ୍ରକାର କ୍ଷୁଦ୍ରତାର ଉର୍ଦ୍ଧ୍ୱକୁ ଉଠି ଦିଗନ୍ତବିସ୍ତାରି ବିଚ୍ଛୁରିତ କର ନିଜକୁ ! ସବୁ ସାଧନା, ସବୁ ସଂଗ୍ରାମର ଏଇ ମୂଳମନ୍ତ୍ର ! ସବାର ଉପରେ ମାନୁଷ ସତ୍ୟ" ।

ତୁମେ ଜୀବନରେ କିଛି ହରାଇ ନାହଁ । କାରଣ କେବଳ ଦେଇ ଯିବା ହିଁ ଥିଲା ତୁମର ଧର୍ମ । ଆମେ ସବୁ ତୁମକୁ ହରାଇଛୁ ।

**୧୨୧, ବି. ସୂର୍ଯ୍ୟନଗର**
**ଭୁବନେଶ୍ୱର-୩**

# ବିଦାୟ, ସାଥୀ, ବିଦାୟ

**ଆଶୀଷ ମହାପାତ୍ର**

କମ୍ରେଡ୍ ସଦାନନ୍ଦ ମହାନ୍ତି ଆମକୁ ଏତେ ଶୀଘ୍ର ଛାଡି ଚାଲିଯିବେ ଓ ମୁଁ ତାଙ୍କ ତିରୋଧାନ ଉପଲକ୍ଷେ ଲେଖିବି, ଏକଥା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି । ଅକାଳ ବଜ୍ରପାତ ଭଳି ଆସିଲା ତାଙ୍କର ମୃତ୍ୟୁର ଦାରୁଣ ଦୁଃସମ୍ବାଦ । ଗତ ସେପ୍ଟେମ୍ବର ୨୫/୨୬ରେ ସେ ଆମ ପାର୍ଟିର ସଂପାଦକ ମଣ୍ଡଳୀର ସାଥୀମାନଙ୍କ ସହିତ ଗଞ୍ଜାମ ଯାଇଥିଲେ । ଗଞ୍ଜାମରେ ଆସିବା ଠାରେ ରାଜ୍ୟ ପାର୍ଟିର ସମ୍ମିଳନୀ ସଂଗଠନର ଉଦ୍ୟୋଗ କରିବାକୁ ଯାଇଥିଲେ । ତାପରେ ମୃତ୍ୟୁର ୬ ଦିନ ପୂର୍ବରୁ ତାଙ୍କ ସହିତ ମୋର ଶେଷ ଦେଖା । ବ୍ୟାଧି ତ ତାଙ୍କର ସ୍ୱାସ୍ଥ୍ୟର ମଞ୍ଜକୁ ଖାଇସାରିଥିଲା । ମାତ୍ର ତାଙ୍କ ମନରେ ଥିଲା ସିଂହର ବଳ ଓ ଅସୀମ ଉଦୀପନା । ଗଞ୍ଜାମରେ କିପରି ଏକ ଐତିହାସିକ ଘଟଣା ଭାବେ ରାଜ୍ୟ ସମ୍ମିଳନୀକୁ ସଂଗଠିତ କରିବାକୁ ହେବ । ଗଞ୍ଜାମର ଗ୍ରାମ ସହରରେ ବୈପ୍ଲବିକ ଚେତନାର ଜୁଆର ଛୁଟାଇବାକୁ ହେବ ଓ ହଜାର ହଜାର ଜନସାଧାରଣଙ୍କୁ ଆସିବାର ମହାଧିବେଶନରେ ପାର୍ଟିର ରକ୍ତ ପତାକା ତଳେ ଠୁଳ କରିବାକୁ ହେବ, ତାର ନକ୍ସା ଓ ଚିତ୍ର ସେ ମୋତେ ଦେଇଥିଲେ । ସେଥିପାଇଁ ଅସଂଖ୍ୟ ଜେନେରାଲବତିରେ ସାଥୀ, ଦରଦୀ ଓ ସମର୍ଥକମାନଙ୍କୁ ଏକାଠି କରି ଆଜିର ସଂକଟମୟ ଓ ଘନଘଟାମୟ ଯୁଗରେ ପାର୍ଟିର ସନ୍ଦେଶ ଥୋଇବାକୁ ଅଣ୍ଟା ଭିଡି ବାହାରିବାକୁ ହେବ- ଏହାଥିଲା ତାଙ୍କର ଭାବନା । ଆହା ! ଆଜି ଆଉ ସେ ନାହାନ୍ତି !! ତାଙ୍କର ଓଡିଶା ପାର୍ଟି, ପ୍ରାଣପ୍ରିୟ ଗଞ୍ଜାମ ମାଟି, ସୁଣ୍ୟତୋୟା ଋଷିକୁଲ୍ୟା ନଦୀ ଓ ଆଲପୁର ଗ୍ରାମର ଛାୟାଚ୍ଛନ୍ନ ଗ୍ରାମ୍ୟ ଉପବନ ଓ ଅସଂଖ୍ୟ ସାଥୀ ବନ୍ଧୁ ଓ ଖଟିଖିଆ ଜନସାଧାରଣ ଆଜି କାନ୍ଦୁଛନ୍ତି । ତାହାହିଁ ବିଡମ୍ବନା- ପ୍ରକୃତିର ନିର୍ଧାର୍ଯ୍ୟ ନିୟମ । ତାକୁ ଲଂଘିବାକୁ କାହାରବା ସାଧ୍ୟ ।

କମ୍ରେଡ୍ ସଦାନନ୍ଦ ମହାନ୍ତିଙ୍କର ରାଜନୈତିକ ଜୀବନର ଇତିହାସ ହେଉଛି ଆଧୁନିକ ଓଡିଶାର ଜନଜୀବନର ଉଠାପକା ପିଚ୍ଛିଳ ଇତିହାସର ଅବିଚ୍ଛେଦ ଅଙ୍ଗ । ଗଞ୍ଜାମର ସନ୍ତାନ ଭାବେ ଋଷିକୁଲ୍ୟା ନଦୀ ତୀରସ୍ଥ ଛାୟାଚ୍ଛନ୍ନ ଆଲପୁର ଗ୍ରାମରେ ୧୯୨୫ ଜୁନ୍ ୧୦ ତାରିଖରେ ଜନ୍ମ ନେଇଥିବା ଏହି ଶିଶୁ ହେଲା ଗଞ୍ଜାମରେ କମ୍ୟୁନିଷ୍ଟ ପାର୍ଟି ଓ ମେହନତି ଶ୍ରେଣୀର ବୈପ୍ଲବିକ ଆନ୍ଦୋଳନର ମହାନ ବିନ୍ଧାଣୀ ଓ ଓଡିଶାରେ କମ୍ୟୁନିଷ୍ଟ ପାର୍ଟିର ଅବିସମ୍ବାଦିତ ନେତା ଓ ୧୬ ବର୍ଷ ଧରି ହେଲେ ଏହାର ଅଗ୍ରଜ ନେତା- ରାଜ୍ୟ ପାର୍ଟିର ସଂପାଦକ । ତାହା ସହିତରେ ସେ ମୃତ୍ୟୁ ପର୍ଯ୍ୟନ୍ତ ଥିଲେ ପାର୍ଟିର ଜାତୀୟ ପରିଷଦର ସଦସ୍ୟ ୧୯୭୧ରୁ ୭୩, ୧୯୭୪, ୭୮ ଯାଏଁ ସେ ରାଜ୍ୟ ବିଧାନସଭାର ଥିଲେ ସଦସ୍ୟ । କେବଳ ଗଞ୍ଜାମ ସହର, ଶିଳ୍ପାଞ୍ଚଳ ନୁହେଁ, ଏଠି ଜିଲ୍ଲାର ବହୁ ଗ୍ରାମ ଓ ଜନପଥରେ ସେ ଛୁଟାଇଛନ୍ତି ଗଣସଂଗ୍ରାମର ତୋଫାନ- ପ୍ରବଳ ସ୍ରୋତ । ଓଡିଶା ପାର୍ଟିକୁ ବିଗତ ଦଶକ, ଦଶକ ଧରି ସେ ଦେଇଛନ୍ତି ଶକ୍ତିଶାଳୀ ନେତୃତ୍ୱ । ମଧ୍ୟପ୍ରଦେଶର ଓଡିଶା ଅଞ୍ଚଳ 'ଶଙ୍କରା ଗ୍ରାମ ସମେତ ହୀରାକୁଦର ଜଳାଧାର ଘେର । ଧରଣୀ ଠାରୁ ଆରମ୍ଭ କରି ମୟୂରଭଞ୍ଜର ମେଘାସନ କୁଞ୍ଜ ଘେରା ବନାଞ୍ଚଳ, କୋରାପୁଟର ତିଳ ତଣ୍ଡୁଳିତ ଭୂଖଣ୍ଡ ସର୍ବତ୍ର- କମ୍ୟୁନିଷ୍ଟ ପାର୍ଟି ଓ ଲାଲ ପତାକାର ଆବାଜ ସେ ପହଞ୍ଚାଇଛନ୍ତି । ଗଞ୍ଜାମରେ ତାକରଡା ଗୁଳିକାଣ୍ଡ ପରେ ଗଣ ଅଭ୍ୟୁତ୍ଥାନର ଯେଉଁ ଉଜାଣୀ ଜୁଆର ଉଠିଛି, ସେ ମହାପ୍ଲାବନରେ ସେ ମିଶାଇ ଦେଇଛନ୍ତି ନିଜର ଜୀବନର ସ୍ରୋତକୁ । ଗଞ୍ଜାମରେ ଦରିଦ୍ର, ନିରନ୍ନ ଶୋଷିତ କୃଷକ ଆନ୍ଦୋଳନରେ ସେ ମହାନ୍ ଚାଷୀନେତା କ. ଗୋବିନ୍ଦ ପ୍ରଧାନ, କ. ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ, କ. ହରିହର ଦାସ, କ. ଦ୍ୟୁତିକୃଷ୍ଣ ପଣ୍ଡା, ଡ. ଚିନ୍ତା ନାୟକ, ବିଜୟ ଚନ୍ଦ୍ର ଦାସଙ୍କ ସହିତ ମିଶି ଗଣସଂଗ୍ରାମ ଜୁଆର ଛୁଟାଇଛନ୍ତି । କ. ହରିବନ୍ଧୁ ବେହେରା, କ. ଲକ୍ଷ୍ମଣ ମହାପାତ୍ର, କ. କାଳୀ ଚରଣ ପଣ୍ଡା ଓ କ ବିଶ୍ୱନାଥ ସାହୁ ପ୍ରଭୃତିଙ୍କ ସହିତ ମିଶି ସେ ଅନେକ ଶ୍ରମିକ, ଛାତ୍ର ଓ ଯୁବକ ସଂଗଠନ ଗଢିଛନ୍ତି । ତାଙ୍କରି ପ୍ରେରଣା ଗଞ୍ଜାମ ପାର୍ଟିକୁ ଗଞ୍ଜାମରୁ କ. ପରଶୁରାମ ପଣ୍ଡା, ମହନ୍ତର ନାୟକ, ଉଦୟ ଚନ୍ଦ୍ର ପାତ୍ର ଓ ଅନେକ ସାଥୀଙ୍କୁ ଆଣି ଆଗାମୀର ଉଜ୍ଜ୍ୱଳ ଆଶାକୁ ସାକାର କରିଛି । ଗଞ୍ଜାମ ପାର୍ଟି ସେହି କୁଟଆଦିରେ ଚାଳିତ ହୋଇ, ପରିଣତ ହୋଇଛି ସଂସ୍କୃତିବନ୍ତ, କ୍ରାନ୍ତିକାରୀ ବହୁ ଯୁବକଙ୍କ ସ୍ୱାର୍ଥତ୍ୟାଗରେ ବଳିୟାନ୍ ଏକ ପାର୍ଟି । କମ୍ରେଡ୍ ନିତ୍ୟାନନ୍ଦ ପ୍ରଧାନ, କ. ନାରାୟଣ, କ. ପ୍ରଶାନ୍ତ, କ. ପ୍ରକାଶ, କ. ଦେବେନ୍ଦ୍ର, କ. ଗୋକୁଳ ବା ନବିନ, ସୋମନାଥ ଭଟ ଯେଉଁ ସାଥୀମାନେ ଆଜି ଗଞ୍ଜାମ ପାର୍ଟିର ଧ୍ୱଜାଧାରୀ, ସେମାନଙ୍କର ପାର୍ଟି ଜୀବନ ପଛରେ କ. ସଦାନନ୍ଦ ମହାନ୍ତିଙ୍କ ପ୍ରେରଣା ରହିଛି । ଗଞ୍ଜାମର ଗାଁ ଗଣ୍ଡା ଓ ତାର ମଣିଷ ସେ ଆତଗଡା, ନନ୍ଦକ, ଧବଳପୁର, ଡେଙ୍ଗାଓସ୍ତ, ହରିଣ, ଶାଗୁଣାପଲ୍ଲୀ, କନକୁଲାବସ୍ତି ଓ କାଳକଣ୍ଠପୁର ବା ଅନ୍ୟ କେଉଁ ଗ୍ରାମ ହେଉ ବା ପଲ୍ଲୀ ହେଉ ତାର ଭୂଗୋଳ ଇତିହାସ ଓ ମଣିଷଙ୍କର ଖୁଣ୍ଟିନାଣ୍ଟି ବିବରଣୀ ଥିଲା ତାଙ୍କର ମୁଖସ୍ତ । ଅଦ୍ଭୁତ ଥିଲା ସେ ଶକ୍ତି । ପାର୍ଟିର ସଂଗଠନ ବେଳେ ସେ ଅର୍ଦ୍ଧାହାର, ଅନାହାରରେ ରହି, ଦୁଃଖ ଦାରିଦ୍ର୍ୟବରଣ କରି ଗଞ୍ଜାମର ଶୋଷିତ ମଣିଷଙ୍କୁ ଉଠାଇଛନ୍ତି, ବିପ୍ଳବମୁଖୀ କରାଇଛନ୍ତି । ତାଙ୍କର ତୀକ୍ଷ୍ଣ ଧୀଶକ୍ତି, ପ୍ରଚଣ୍ଡ ବ୍ୟକ୍ତିତ୍ୱ, ବୈପ୍ଳବିକ ବୌଦ୍ଧିକତା ଓ ଅପୂର୍ବ ବାଗ୍ମୀତା ଗଞ୍ଜାମ ପାର୍ଟିର ପ୍ରାଣତନ୍ତ୍ରୀ, ରୁଦ୍ରବୀଣାର ଝଙ୍କାର ତୋଳିଛି । ଋଷିକୁଲ୍ୟା ଧବଳ- ରଜତ ଶଯ୍ୟାରେ ଶୋଇ ସଦାନନ୍ଦ,

ହରିବନ୍ଧୁ ଓ ଦ୍ୟୁତିକୃଷ୍ଣ ଆଙ୍କିଛନ୍ତି ଗଞ୍ଜାମ ପାର୍ଟିର ଭବିଷ୍ୟତର ନକ୍ସା । ତାହା କେବେ ସଂପନ୍ନ ହେବ !

ଆଉ ଓଡିଶା ପାର୍ଟିର ସଂପାଦକ ଭାବେ ସେ ଓଡିଶା ପାର୍ଟିକୁ ଆଗକୁ ଆଗେଇ ନେବାରେ ନେତୃତ୍ୱ ଦେଇଛନ୍ତି । ତାଙ୍କର ଉଦ୍ୟମରେ ରାଜ୍ୟ ପାର୍ଟିର ଗର୍ବ 'ଭଗବତୀ ଭବନ' ମୁଣ୍ଡ ଟେକିଛି, ଯାହାକୁ ପ୍ରତିଟି କମ୍ୟୁନିଷ୍ଟ "ମୋର ଘର ଟ" ମୋର କାର୍ଯ୍ୟାଳୟ ବୋଲି କହିପାରିବ । ଅତି କଠିନ ସମୟରେ, ଜରୁରୀକାଳୀନ ପରିସ୍ଥିତି ଭଳି ସମୟରେ, ୧୯୭୭ରେ ଜନତା ପାର୍ଟି ଶାସନକାଳରେ ଓ ବିଶେଷତଃ ଯୁଗସନ୍ଧିର ମୁହୂର୍ତ୍ତରେ ସେ ପାର୍ଟିକୁ ନେତୃତ୍ୱ ଦେଇଛନ୍ତି । ଓଡିଶାର ଚିର ସହଚର ବନ୍ୟା, ବାତ୍ୟା ଭଳି ସଙ୍କଟରେ ସେ ନିଜର ଦୁର୍ବଳ ସ୍ୱାସ୍ଥ୍ୟରେ ମଧ୍ୟ କାମ କରିଯାଇଛନ୍ତି । ୧୯୮୨ରେ ପ୍ରବଳ ବାତ୍ୟାରେ କଟକ- ବାଲେଶ୍ୱର ଉପକୂଳରେ ଦୁର୍ଭିକ୍ଷ, ଅନାହାର ଓ ମୃତ୍ୟୁ- ମଡକର ରାଜୁତି ଚାଲିଥିବା ବେଳେ କ. ସଦାନନ୍ଦ ମହାନ୍ତି, ଚାଳବାସି- ଟିସିଟିରେ କ୍ୟାମ୍ପ କରି ରହି ଦୁର୍ଗତ ମଣିଷଙ୍କର ସେବା କରିଛନ୍ତି ଓ ସେମାନଙ୍କର ଦୁଃଖର ନିରାକରଣ ପାଇଁ ଗଣସଂଗ୍ରାମର ଆବାଜ ଉଠାଇଛନ୍ତି । କମ୍ରେଡ୍ ରାଜେଶ୍ୱର ରାଓଙ୍କ ନେତୃତ୍ୱରେ, ରାଜ୍ୟ ପାର୍ଟିର ସାଥୀମାନଙ୍କ ଗହଣରେ ସେ ଯାଇଛନ୍ତି ବନ୍ୟାଧ୍ୱସ୍ତ ବିପୁଳ ଇଲାକାକୁ । ଆଖିର ଲୁହକୁ ସମ୍ଭାଳି ଫେରିଛନ୍ତି । ଗଞ୍ଜାମ, ପୁରୀ, କଟକ, ସମ୍ବଲପୁର ପ୍ରଭୃତି ଜିଲ୍ଲାକୁ ଯାଇ ପାର୍ଟି ସଂଗଠନର ରୂପାୟନ କରିଛନ୍ତି । ପାର୍ଟି ସଭ୍ୟ ନବୀକରଣ, ଅଭିଯାନକୁ ଶୃଙ୍ଖଳିତ କରିବାରେ ସଦାନନ୍ଦ ମହାନ୍ତିଙ୍କ କାର୍ଯ୍ୟ ଅବିସ୍ମରଣୀୟ । ପାର୍ଟି ଭିତରେ ତାତ୍ତ୍ୱିକ, ରାଜନୈତିକ ଓ ସଂଗଠନିକ ଐକ୍ୟ ସକାଶେ ତାଙ୍କର ଅବଦାନ ତାଙ୍କୁ ଅମର କରି ରଖିବ । ତାଙ୍କର ଶାଣିତ ଅକାଟ୍ୟ ଯୁକ୍ତି ଓ ଜ୍ୱାଳାମୟୀ ଭାଷାରେ ଭାଷଣ ଓଡିଶାରେ ପ୍ରଗତିଶୀଳ ଜନମତକୁ ଉଦ୍‌ବେଳିତ କରିଛି । ବାରମ୍ବାର ସେ ଦୁରାରୋଗ୍ୟ ରୋଗର ଶିକାର ହୋଇ ଶଯ୍ୟାଶାୟୀ ହୋଇଛନ୍ତି ଓ ପୁଣି ରୋଗ ଶଯ୍ୟାରୁ ଉଠି ପୁଣି ପାର୍ଟି ଖାଦାମର କୋଳକୁ ଫେରି ଆସିଛନ୍ତି । ଗ୍ରାସରୁଟ୍ କାର୍ଯ୍ୟ ଶୈଳୀ ଥିଲା ତାଙ୍କର କାର୍ଯ୍ୟ ପଦ୍ଧତିର ପ୍ରକୃତ ଦିଗ । ସେ କଳ୍ପନା ବିଳାସୀର ଆଳସ୍ୟର ଶିକାର ହେଉନଥିଲେ । ଭୁଲ କରୁଥିବା ସାଥୀର ତ୍ରୁଟିକୁ ସେ ସାଥୀ ସୁଲଭ ସ୍ନେହ ତଥା ଦୃଢତା ସହକାରେ ସୂଚାଇ ଦେଉଥିଲେ । ତାଙ୍କ ସହିତ ତାତ୍ତ୍ୱିକ- ରାଜନୈତିକ ପ୍ରଶ୍ନରେ ତୀବ୍ର ବିରୋଧ କରିଥିବା ସାଥୀଙ୍କ ପ୍ରତି ତାଙ୍କର ସ୍ନେହ, ଶ୍ରଦ୍ଧା ଓ ସମ୍ମାନବୋଧ ରହିଥିଲା । ବ୍ୟକ୍ତିଗତ ଆକ୍ରୋଶର ଲେଶମାତ୍ର ତାଙ୍କ ମନୋଭାବରେ ଫୁଟୁ ନଥିଲା । 'ଗ୍ରାସ୍ ରୁଟ୍ କାର୍ଯ୍ୟଶୈଳୀର ରୂପାୟନରେ କ. ଗୋକଳନ ନାୟକଙ୍କ ସହିତ ସେ ରାଜ୍ୟ ସାରା ବୁଲିଥିଲେ । ତାହା ତାଙ୍କର କାର୍ଯ୍ୟଶୈଳୀର ରୁଟ ।

ଓଡିଶାରେ ସମସ୍ତ ବାମପନ୍ଥୀ- ପ୍ରଗତିଶୀଳ- ତଥା ଗଣତାନ୍ତ୍ରିକ ଶକ୍ତିକୁ ଏକଜୁଟ କରି ନ୍ୟସ୍ତସ୍ୱାର୍ଥ, ପୁଞ୍ଜିଭୂତ ସାମାଜିକ ଶୋଷଣ ଅନାଚାର ବିରୋଧରେ ତୀବ୍ର ସଂଗ୍ରାମକୁ ଚଳାଇଯିବାର ଉଦାର ଡାକରା ଥିଲା କମ୍ରେଡ୍ ସଦାନନ୍ଦ ମହାନ୍ତିଙ୍କର ନିରବଚ୍ଛିନ୍ନ ଆହ୍ୱାନ । ସାମନ୍ତବାଦୀ- ପୁଞ୍ଜିବାଦୀ ଶୋଷଣର ମଡକୁ ଛିନ୍ନ କରିବା ପାଇଁ ବଳିଷ୍ଠ ସଂଗଠନର ଗଠନ ଓ କ୍ରାନ୍ତିକାରୀ ମତାଦର୍ଶର ପ୍ରଚାର ଏକାନ୍ତ ଆବଶ୍ୟକ ବୋଲି ସେ ବାରମ୍ବାର କହି ଆସିଛନ୍ତି । ଆଜି ଅନେକ କଥା କରିବାର ଅଛି । ଅଥଚ ସେ ଆଜି ଆଉ ନାହାନ୍ତି । ଜନ୍ମ ଯେପରି ସତ୍ୟ- ମୃତ୍ୟୁ ସେପରି ସତ୍ୟ । ନିଷ୍ଠୁରତମ ଓ ଶାଶ୍ୱତ ସତ୍ୟ ହେଉଛି ମୃତ୍ୟୁ । କବିବର ରାଧାନାଥଙ୍କ ଭାଷାରେ :-

"ଜନ୍ମ ହେଲେ ନିଶ୍ଚେ ମୃତ୍ୟୁ ନିବାରଣେ ନାହିଁ ଶକତି
ଜୀବନ ଯାହାକୁ କହନ୍ତି ସେ ସିନା ମୃତ୍ୟୁକୁ ଗତି ।"

ପୁନଶ୍ଚ ଆଉ ଏକ କଟକ ଭାଷାରେ, "ଜୀବନ ନୁହଁଇ ସ୍ଥିର, ସ୍ଥିରଟି ମରଣ" । ତାଙ୍କ ମା'ଙ୍କ ମୃତ୍ୟୁ ବେଳେ, ସେ ମେଣ୍ଢାଶାଳ ପାର୍ଟି ଶିବିରରୁ ଛୁଟି ପାଇ ଛୁଟିଥିଲେ ତାଙ୍କ ଗ୍ରାମର ଶ୍ମଶାନଭୂମିକୁ- ପ୍ରଣାମ କରିଥିଲେ ପ୍ରାୟ ମାତାଙ୍କର ଚିତା ଭସ୍ମକୁ । ଆଜି ଓଡିଶା ପାର୍ଟିର ଅଗଣିତ ସାଥୀ, ତାଙ୍କର ଅସଂଖ୍ୟ ବନ୍ଧୁ ଓ ପାର୍ଟିକୁ ଭଲ ପାଉଥିବା ଜନସାଧାରଣ, ତାଙ୍କର ଶୋକ ବେଳେ, ରାଜ୍ୟର ଏହି ମହାନ ସନ୍ତାନର ଶ୍ମଶାନସ୍ଥଳକୁ ନିଶ୍ଚିତ ଭାବେ ପ୍ରଣାମ କରୁଥିବେ । ମାତ୍ର ସେତିକି କଲେ ଯଥେଷ୍ଟ ହେବନି, କମ୍ରେଡ ସଦାନନ୍ଦ ମହାନ୍ତିଙ୍କ ପାଇଁ ଯେଉଁ ଆଦର୍ଶ, ଯେଉଁ ସଂଗଠନ ଓ ଯେଉଁ ସଂଗ୍ରାମ ଥିଲା ପ୍ରାଣାଦପି ପ୍ରିୟ, ସେସବୁର ଯଥାର୍ଥ ରୂପାୟନ କରି ପାରିଲେ, ତାହା ହେବ ସେହି ମହାନ ସଂଗ୍ରାମୀ ନେତାଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧାଞ୍ଜଳି । ସେଥିପାଇଁ ଅସୀମ ସାହାସ, ତ୍ୟାଗ, ସଂକଳ୍ପ ଓ ଆଦର୍ଶ ପ୍ରତି ନିଷ୍ଠା ଆବଶ୍ୟକ । ଯେଉଁମାନେ ଆଜି ଚିତ୍କାର କରୁଛନ୍ତି "ସାମ୍ୟର ମତାଦର୍ଶ ମରି ଯାଇଛି, ସେମାନଙ୍କୁ କମ୍ରେଡ୍ ସଦାନନ୍ଦ ଭୁଲ୍ ବୋଲି କହିଛନ୍ତି । ସାମ୍ୟବାଦ ଓ ବିପ୍ଳବ ମରିପାରେନା- ଏହା ଥିଲା ତାଙ୍କର ଅନ୍ତିମ ଦୃଢ ପ୍ରତ୍ୟୟ । ଓଡିଶା ପାର୍ଟିର ହଜାର ହଜାର ସାଥୀ- ସମର୍ଥକ ଏହି ମହାନ୍ ନେତାର ଆହ୍ୱାନକୁ ଠିକ୍ ଭାବେ ଶୁଣିପାରିବେ- ଏହା ମୋର ବିଶ୍ୱାସ । ଆଉ ମୋର, ସଦାନନ୍ଦ ବାବୁଙ୍କ ସହିତ ସଂପର୍କ- ସେଇଠୁ ବୋଧେ ଆରମ୍ଭ କରିଥିଲି । ଆଖି ମୋର ଲୁହରେ ଅନ୍ଧ ହୋଇଯାଉଛି ... ଆଉ କଲମ ଚାଲୁ ନାହିଁ । ମୁଁ କିଛି ଲେଖିପାରୁନି । ତେଣୁ ଶେଷକୁ "ହେ କମ୍ରେଡ ସଦାନନ୍ଦ ମହାନ୍ତି, ତୁମକୁ ମୋର ଲୋହିତ ପ୍ରଣାମ !!"

ତାଙ୍କ ସମ୍ମାନରେ ପାର୍ଟିର ରକ୍ତଧ୍ୱଜା ଅର୍ଦ୍ଧନମିତ !! ହେ ସାଥୀ ସଦାନନ୍ଦ, ତୁମେ ଅମୃତର ସନ୍ତାନ ଭାବେ ଆମର ସ୍ମରଣରେ ଚିର ଦିନ ରୁହ ।

-ବିଦାୟ ସାଥୀ ! ବିଦାୟ !

# ଅଖ୍ୟାତ ପଲ୍ଲୀର ବିଖ୍ୟାତ ସନ୍ତାନ

— ପଦ୍ମଚରଣ ସାହୁ

ପୁଣ୍ୟତୋୟା ଋଷିକୂଲ୍ୟାରେ ଅନେକ ପାଣି ବୋହି ଯାଉଛି । ଯାହା ଥରେ ବୋହିଗଲା ଆଉ ଫେରି ଆସୁନାହିଁ । ସେହିଭଳି ଅଣଲେଉଟା ସମୟର ସ୍ରୋତ । ଅକଳନ ବର୍ଷ, ମାସ, ଦିନ, ଦଣ୍ଡ ମହାକାଳ ଗର୍ଭରେ ଲୀନ ହେଉଛି । ଝଡତୋଫାନରେ ବିଶାଳ ବୃକ୍ଷ ସବୁ ଓଲଟି ପଡୁଛି; କିନ୍ତୁ କ୍ଷୁଦ୍ରାକାୟ ଘାସଗୁଚ୍ଛର କିଛି କ୍ଷତି ହେଉ ନାହିଁ । ସମୟର ଝଡଝଂଜାରେ କେତେ ବିଶ୍ୱବିଖ୍ୟାତ ସାମ୍ରାଜ୍ୟ ଲୋପ ହୋଇ ଯାଇଛି ।; କେତେ ମହାନଗରୀ ଧ୍ୱଂସ ହୋଇସାରିଛି । କିନ୍ତୁ ପଲ୍ଲୀ ରହିଛି ଅଜେୟ, ଅତୁଟ ଏବଂ ଅକ୍ଷୟ । ପଲ୍ଲୀମାଳିନୀ ଉତ୍କଳର ସେଭଳି ଏକ ଅଖ୍ୟାତପଲ୍ଲୀ 'ଆଳପୁର' । ଗଞ୍ଜାମ ଜିଲ୍ଲାର ହିଞ୍ଜିଳିକାଟୁ ଠାରୁ ପୂର୍ବ ଉତ୍ତର ଦିଗରେ ସାତ କିଲୋମିଟର ଦୂର ଋଷିକୂଲ୍ୟା ନଦୀ ଦକ୍ଷିଣ ପାର୍ଶ୍ୱରେ ଏ ଗାଁର ଅବସ୍ଥିତି ।

କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କ 'ମାଟିର ମଣିଷ' ଉପନ୍ୟାସରେ 'ପଧାନପୁର'ର ବର୍ଣ୍ଣନା ପଢିଲେ ସ୍ୱତଃ ମନକୁ ଆସି ଯାଇଥାଏ 'ଆଳପୁର' ଗାଁର ଦୃଶ୍ୟ । ଋଷିକୂଲ୍ୟା ବାଲୁକା ଶଯ୍ୟାର ଅନତିଦୂରରେ ଝାଟିମାଟିର ଘର ଦୁଇ ଧାଡି । ନଦୀ ଓ ଗାଁ ମଝିରେ ରହିଛି ବିଶାଳକାୟ ବଟବୃକ୍ଷ ସବୁ । ବୟସର ଭାରାରେ ଗଛର ଶାଖା ପ୍ରଶାଖା ସବୁ ଓହଳି ଭୂଇଁରେ ଲାଗେ ନ ଲାଗେ ଅବସ୍ଥାରେ ରହିଛି । ପ୍ରାକୃତାକ ଶୋଭାର ଭଣ୍ଡାର ସେଇ 'ଆଳପୁର' ଗାଁ ବିଶିଷ୍ଟ କମ୍ୟୁନିଷ୍ଟ ନେତା ସ୍ୱର୍ଗତ ସଦାନନ୍ଦ ମହାନ୍ତିଙ୍କ ଜନ୍ମସ୍ଥାନ । ବିଂଶ ଶତାବ୍ଦୀର ତୃତୀୟ ଦଶକରେ ଏଇ ଗାଁର ଖ୍ୟାତନାମା କରଣ ଘରେ ସେ ଜନ୍ମ ଗ୍ରହଣ କରିଥିଲେ । ସେଇ ନଦୀ, ସେଇ ତୋଟା, ସେହି ପ୍ରାକୃତିକ ପରିବେଶରେ ବାଲ୍ୟଜୀବନ ଅତିବାହିତ ହୋଇଥିଲା ସଦାନନ୍ଦ ମହାନ୍ତିଙ୍କର ।

ବାଲ୍ୟ ଶିକ୍ଷା ସେ ଗ୍ରହଣ କରିଥିଲେ ଆଳପୁର ଠାରୁ ଦୁଇ କିଲୋମିଟର ପୂର୍ବରେ ଅବସ୍ଥିତ ନନ୍ଦିକ ଗ୍ରାମର ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ । ପ୍ରତିଦିନ ସଞ୍ଜ ସକାଳେ ସେ ଋଷିକୂଲ୍ୟା ନଦୀର କାଶତଣ୍ଡି ଜଙ୍ଗଲ ମଧ୍ୟରେ ଲମ୍ବି ଯାଇଥିବା ଅନୁଚ୍ଚ କୂଳହୁଡାରେ ଚାଲି ଚାଲି ନନ୍ଦିକ ଯିବା ଆସିବା କରି ପ୍ରାଥମିକ ଶିକ୍ଷା ସମାପ୍ତ କରିଥିଲେ । ମାଧ୍ୟମିକ ଶିକ୍ଷା ଗ୍ରହଣ ପାଇଁ ସେ ପୁରୁଷୋତ୍ତମପୁର ନରସିଂହ ଦାସ ଉଚ୍ଚ ବିଦ୍ୟାଳୟରେ ପ୍ରବେଶ କରିଥିଲେ । ସେତିକି ବେଳୁଁ ତାଙ୍କର ସ୍ୱାଧୀନଚେତା ମନୋଭାବ ଓ ଅନ୍ୟାୟ ଅନାଚାର ବିରୁଦ୍ଧରେ ସଂଗ୍ରାମ କରିବା ମନୋଭାବ ପରିପ୍ରକାଶ ହୋଇଥିଲା । କୌଣସି ଶିକ୍ଷକଙ୍କ ସାମାନ୍ୟତମ ବ୍ୟତିକ୍ରମ ଆଚରଣ ସହିଯିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ଅନ୍ୟାୟ ବିରୁଦ୍ଧରେ ବିଦ୍ରୋହ କରୁଥିଲେ । ସେଠାକାର ତତ୍କାଳୀନ ସୁନାମଧନ୍ୟ ପ୍ରଧାନଶିକ୍ଷକ କାଳିଆ ପାଣିଗ୍ରାହୀ, ଛାତ୍ର ସଦାନନ୍ଦ ମହାନ୍ତିଙ୍କ ପ୍ରତିକ୍ରିୟାରେ ଅତିଷ୍ଠ ହୋଇପଡିଥିଲେ । ଫଳରେ ମାଧ୍ୟମିକ ଶିକ୍ଷା ସମାପ୍ତ କରିବା ପୂର୍ବରୁ ସଦାନନ୍ଦ ପୁରୁଷୋତ୍ତମପୁର ଛାଡିବା ପାଇଁ ବାଧ୍ୟ ହୋଇଥିଲେ ଏବଂ ଗଞ୍ଜାମ ଜିଲ୍ଲାର ସଦର ମହକୁମା ଛତ୍ରପୁରରୁ ମାଟ୍ରିକ ପାସ ହୋଇଥିଲେ । ତାପରେ ବ୍ରହ୍ମପୁର ଠାରେ ଖଲ୍ଲିକୋଟ କଲେଜରେ ଶିକ୍ଷା ଗ୍ରହଣ କରିଥିଲେ । କଲେଜ ଛାତ୍ର ଥିବା ବେଳେ ସେ ଛାତ୍ରନେତା ଭାବେ ସମଗ୍ର ଓଡିଶାରେ ଖ୍ୟାତି ଅର୍ଜନ କରିଥିଲେ । କୃଷକ ଓ ଶ୍ରମିକ ଆନ୍ଦୋଳନର ସେ ଥିଲେ ସେତେବେଳର ଅନ୍ୟତମ ଅଗ୍ରଗଣ୍ୟ ନେତା । ସଦାନନ୍ଦ କିନ୍ତୁ ଡିଗ୍ରୀ ପରୀକ୍ଷା ଶେଷ କରି ପାରିନଥିଲେ । ଶେଷ ବର୍ଷର ପରୀକ୍ଷା ପୂର୍ବରୁ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମ ଯୋଗୁଁ ତାଙ୍କୁ ଜେଲ ହାଜତରେ ରଖାଯାଇଥିଲା ଏବଂ ସେ ପରୀକ୍ଷା ଦେବାରୁ ବଞ୍ଚିତ ହୋଇଥିଲେ । ତା'ପରେ ଆଉ କେବେ ପରୀକ୍ଷା ଦେବା ପାଇଁ ଇଚ୍ଛା କରିନଥିଲେ ।

ଶିକ୍ଷା ସମାପ୍ତି ପରେ ସେ ନିଜ ଗାଁ ଆଳପୁରକୁ ହିଁ ପ୍ରଥମ କର୍ମସ୍ଥଳୀ ଭାବେ ବାଛି ନେଇଥିଲେ । ତତ୍କାଳୀନ ଅଗ୍ରଗଣ୍ୟ ନେତା ଗୋବିନ୍ଦ ପ୍ରଧାନଙ୍କ ପାଟପୁର ଶେରଗଡ ଅଞ୍ଚଳର ଆନ୍ଦୋଳନକୁ ଯୁବକ ସଦାନନ୍ଦ ପୁରୁଷୋତ୍ତମପୁର ଯାଏଁ ବଢାଇ ଦେଇଥିଲେ । ଏ ଅଞ୍ଚଳ ସେତେବେଳେ କମ୍ୟୁନିଷ୍ଟ ଦୁର୍ଗ ଭାବେ ପରିଚିତ ହୋଇ ପାରିଥିଲା । ଅଖ୍ୟାତପଲ୍ଲୀ ଆଳପୁର ସମଗ୍ର ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ଆନ୍ଦୋଳନର କେନ୍ଦ୍ର ସ୍ଥଳ ଭାବେ କିଛି ବର୍ଷ ପାଇଁ ଖ୍ୟାତି ଅର୍ଜନ କରିଥିଲା । ସେଇ ଆଳପୁର ଗାଁ ଉପକଣ୍ଠରେ ଅବସ୍ଥିତ ନନ୍ଦିକ ଗ୍ରାମର ବିରାଟ କୁଦପଡିଆ କମ୍ୟୁନିଷ୍ଟ ଆନ୍ଦୋଳନକାରୀଙ୍କ ଲୀଳାସ୍ଥଳୀ ଥିଲା । ମାଇଲିଏ ଲମ୍ବର ସେହି ପଡିଆରେ ଆଖପାଖ ଦଶ ପନ୍ଦରଟି ଗ୍ରାମର ଲୋକଙ୍କୁ ଏକତ୍ରିତ କରି ଜନସଭା ମାନ ଅନୁଷ୍ଠିତ ହେଉଥିଲା ।

କ୍ରମେ ସଦାନନ୍ଦ ବାବୁ କମ୍ୟୁନିଷ୍ଟ ପାର୍ଟିର ଜିଲ୍ଲା ମୁଖ୍ୟ ଏବଂ ବହୁ ବର୍ଷ ପାଇଁ ପ୍ରାଦେଶିକ ମୁଖ୍ୟ ଭାବେ ଦାୟିତ୍ୱ ସଂପାଦନ କରିଥିଲେ । ତାଙ୍କର ପାଲିସ୍ ବିହିନ କାର୍ଯ୍ୟ ଓ ସ୍ପଷ୍ଟ କଥା ଜନଜୀବନକୁ ବହୁଳ ଭାବରେ ପ୍ରଭାବିତ କରିଥିଲା ।

ସଦାନନ୍ଦ ମହାନ୍ତି ଥିଲେ ସୁବକ୍ତା । ଭଲ ଭାଷଣ ଦେବାରେ ସମଗ୍ର ଓଡ଼ିଶାରେ ତାଙ୍କର ଖ୍ୟାତି ରହିଥିଲା । କୌଣସି ସଭାରେ ସଦାନନ୍ଦ ବାବୁ ଭାଷଣ ଦେବେ ବୋଲି ଜାଣିଲେ ବହୁ ଦୂରଦୂରାନ୍ତରୁ ଲୋକେ ଚାଲି ଆସୁଥିଲେ ଭାଷଣ ଶୁଣିବା ପାଇଁ । କେବଳ ସଭା ସମିତି ନୁହେଁ, ସଂଗଠନ କାର୍ଯ୍ୟରେ ଏବଂ ସାଧାରଣ ଦୈନନ୍ଦିନ କଥା ଭାଷାରେ ମଧ୍ୟ ତାଙ୍କର ସ୍ୱର ଥିଲା ଉଚ୍ଚ ଓ ସ୍ପଷ୍ଟ । ଗୁପଚୁପ୍ କଥା ନୁହେଁ, ଲୁଚା ଛପା କଥା ନୁହେଁ- ବଡ ପାଟିରେ ରଡ଼ି ଛାଡ଼ି କଥା କହିବା ଥିଲା ସବୁ ଦିନର ଅଭ୍ୟାସ । [illegible]

କଥା କହୁଥିଲେ ସେମୁଣ୍ଡ ଯାଏଁ ଶୁଭୁଥାଏ ତାଙ୍କର ସ୍ୱର । କୌଣସି କାର୍ଯ୍ୟବଶତଃ ସରକାରୀ ଅଫିସକୁ ଗଲେ ଫାଟକ ପାଖରୁ ମେଘ ଘଡ ଘଡି ପରି ଗର୍ଜନ କରି ଚାଲିଥିବା ଅଭ୍ୟାସ । ଛତ୍ରପୁରରେ ଗଞ୍ଜାମ ଜିଲ୍ଲାପାଳଙ୍କ ଅଫିସକୁ ଗଲେ ଗେଟ୍ ପାଖରୁ କୌଣସି କର୍ମଚାରୀକୁ ଦେଖି 'ତମ କଲକଟ୍ର ଅଛନ୍ତି କିହେ ?' ରଡ଼ି ପକାଇ ଅଫିସ୍‌ରେ ପସିବା ମୁଁ ଦେଖିଛି । ପୁଣି କଥା ଛଟାରେ ସଭାସମିତି ଏବଂ ବିଧାନସଭାର ଆଲୋଚନାରେ ହାସ୍ୟୋରୋଳ ସୃଷ୍ଟି କରାଇବାରେ ସେଥିଲେ ଖ୍ୟାତନାମା ନେତା ।

ଆଲପୁର ନିକଟସ୍ଥ ଅପେକ୍ଷାକୃତ ବଡ଼ଗାଁ 'ନନ୍ଦିକ'ର ଲୋକ ଭାବେ ମୁଁ ଥିଲି ଗତ ତିରିଶ ବର୍ଷ ଧରି ସଦାନନ୍ଦ ମହାନ୍ତିଙ୍କ ପରିଚିତ । ବାଟରେ ଘାଟରେ, ସହର ବଜାରରେ ଦେଖାହେଲେ ତାଙ୍କର ସେହି ସ୍ୱଭାବସୁଲଭ ଘଡଘଡିଆ ସମ୍ଭାଷଣ । ଏବେ ଦୁଇ ବର୍ଷ ତଳେ ମୋଦ୍ୱାରା ରଚିତ 'କର୍ମବୀର ବୃନ୍ଦାବନ ନାୟକ' ଜୀବନୀଗ୍ରନ୍ଥ ପ୍ରକାଶନ ପରେ ସମୀକ୍ଷକ ମାନେ ତାହାକୁ ଗଞ୍ଜାମ ଜିଲ୍ଲାର ଅର୍ଦ୍ଧ ଶତାବ୍ଦୀର ରାଜନୈତିକ ଇତିହାସ ଆଖ୍ୟା ଦେଲେ । ବିଶିଷ୍ଟ କମ୍ୟୁନିଷ୍ଟ ନେତା ଶ୍ରୀଯୁକ୍ତ ହରିହର ଦାସ ସେ ଗ୍ରନ୍ଥ ପଢି ମୋ ପାଖକୁ ଏକ ପତ୍ରରେ ଲେଖିଲେ- 'ତୁମେ ବୃନ୍ଦାବନ ନାୟକଙ୍କ ଜୀବନ ସମେତ ଗଞ୍ଜାମର ବହୁ ରାଜନୈତିକ ଘଟଣାକୁ ସେ ଗ୍ରନ୍ଥରେ ରଖିପାରିଛ । ବହୁ ଐତିହାସିକ ଓ ରାଜନୈତିକ ଘଟଣା ସଂଗ୍ରହ କରି ପାରିଛ । ଏହି ବହିଟି ନଲେଖିଥିଲେ ଗଞ୍ଜାମର ବହୁ ଘଟଣା ସର୍ବସାଧାରଣଙ୍କର ଅଗୋଚରରେ ରହି ଯାଇଥାଆନ୍ତା । ବୃନ୍ଦାବନ ବାବୁଙ୍କୁ ଉଚିତ ସମ୍ମାନ ଦେଇପାରିଛ । କାହାରିକୁ ଅସମ୍ମାନ କରିନାହଁ । କେବଳ ପୁଟିଆପଦର ଗାଁ ସଭାରେ ସଦାନନ୍ଦ ମହାନ୍ତିଙ୍କ ଭାଷଣ ସଂପର୍କରେ କିଛି ଅତିରଞ୍ଜିତ ହୋଇଯାଇଛି ବୋଲି ମନେ ହୁଏ । ସେ ସଭାରେ ମୁଁ ନଥିଲି ତୁମେ ନଥିଲ । ଶୁଣାଶୁଣି କଥା'

ଏପତ୍ର ପାଇବା ପରେ ମୁଁ ଭୁବନେଶ୍ୱର ଯାଇ ସଦାନନ୍ଦ ମହାନ୍ତିଙ୍କ ସହିତ ଦେଖା କରିଥିଲି । ବହିଟିଏ ଉପହାର ଦେଇ ପୁଟିଆପଦର ସଭା ବିବରଣୀ ଦେଖିବା ପାଇଁ ପୃଷ୍ଠା ନମ୍ବର କହିଥିଲି । ସେହି ଉପାଖ୍ୟାନଟି ସଂପୂର୍ଣ୍ଣ ଭାବେ ପଢ଼ିବା ପରେ ସେ ହୋ ହୋ ରଡ଼ିଛାଡ଼ି ହସିଥିଲେ । କିଛି ଭୁଲ ରହି ଯାଇଛି କି ବୋଲି ମୁଁ ପ୍ରଶ୍ନ ପଚାରିବାରେ ସେ କହିଲେ— 'ଠିକ୍ ଅଛି । କିଛି ଭୁଲ ନାହିଁ । କଥା ପ୍ରସଙ୍ଗରେ, ଭାଷଣରେ ଅନେକ କଥା କହି ଦିଆଯାଏ । ସେତେବେଳେ ରାଜନୈତିକ ଦୃଷ୍ଟିକୋଣରୁ ସେଭଳି କହିବା ଆବଶ୍ୟକ ଥିଲା । ତୁମେ କିନ୍ତୁ ସେ ଘଟଣାକୁ ଇତିହାସର ବିଷୟବସ୍ତୁ ଭାବେ ଉପସ୍ଥାପନ କରିବ ବୋଲି ମୁଁ ସେତେବେଳେ ଜାଣିଥିଲି କି ?'

ସଦାନନ୍ଦ ମହାନ୍ତିଙ୍କ ସେ ବାକ୍ୟ ଥିଲା ଇତିହାସର ସଂଳାପ । ସେ ଥିଲେ କିମ୍ବଦନ୍ତୀର ମଣିଷ । ତା ପରେ ମୁଁ ଆଉ ତାଙ୍କୁ ଦେଖିବାର ସୁଯୋଗ ପାଇନାହିଁ । ଏବେ ସପ୍ତାହକ ପୂର୍ବେ ସେ ଇହଲୀଳା ସମ୍ବରଣ କଲେ । ସେଇ ଋଷିକୂଲ୍ୟାରେ ଏବେ ମଧ୍ୟ ପାଣି ବୋହି ଚାଲିଛି । ସେହି 'ଆଲପୁର' ରହିଛି; କିନ୍ତୁ ତା କୋଳର ସୁଯୋଗ୍ୟସନ୍ତାନକୁ କାଳ ଛଡାଇ ନେଇଛି । ମଣିଷ ଆସୁଛି; ପୁଣି ଯାଉଛି । ସମୟ ସୈକତରେ ସଭ୍ୟତାର ପାଦ ଚିହ୍ନ କିନ୍ତୁ ସହଜରେ ଲିଭି ଯାଉ ନାହିଁ ।

ଆଡ୍‌ଭୋକେଟ୍
ଅଶୋକ ନଗର, ବ୍ରହ୍ମପୁର

# ସଦାନନ୍ଦ ମହାନ୍ତିଙ୍କୁ ଏକ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି

—ନିତ୍ୟାନନ୍ଦ ପ୍ରଧାନ

ସ୍ୱର୍ଗତ ସଦାନନ୍ଦ ମହାନ୍ତି ଆଉ ନାହାଁନ୍ତି । ଗଲା ୧୬ ତାରିଖ ସନ୍ଧ୍ୟା ପ୍ରାୟ ସନ୍ଧ୍ୟା ୭ ଘଣ୍ଟା ବେଳେ ସାଥୀ ପ୍ରଶାନ୍ତ ପାଇଯୋଶୀଙ୍କର ଟେଲିଫୋନ୍ ସମ୍ବାଦ, ସାରା ଦିନ ନିର୍ବାଚନମଣ୍ଡଳୀର ବିଭିନ୍ନ ଗାଁ ବୁଲି ଆସିଲା ପରେ, ଏପରି ଏକ ଦୁଃସମ୍ବାଦ ମୋ ପକ୍ଷରେ ଅତ୍ୟନ୍ତ ମର୍ମନ୍ତୁଦ । ମାତ୍ର ଚାରିଦିନ ପୂର୍ବରୁ ତାଙ୍କ ସହ ଭୁବନେଶ୍ୱର ଡାକ୍ତରଖାନାରେ ଶେଷ ଦେଖା । ଶରୀର ଅବଶ କିନ୍ତୁ ମନୋବଳ ଖୁବ୍ ଦୃଢ । ନିଜେ ଉଠିବା ଅବସ୍ଥା ନାହିଁ, କିନ୍ତୁ ଏକମାତ୍ର ଜିଦ୍ ବାଥ୍ରୁମ୍‌କୁ ଯିବି ପରିଶ୍ରା କରିବା ପାଇଁ । ମୁଁ, ରାଜୁ ଓ ଅଶୋକ ତାଙ୍କୁ ଧରି ନେଇଥିଲୁ ଏବଂ ବାଥ୍ରୁମ୍‌ରୁ ଫେରିଲା ପରେ ମଧ୍ୟ ନିଜର ମତରେ ସେ ଦୃଢ । କୌଣସି ଲୋକ ତାଙ୍କୁ ନିଜ ମତରୁ ଟଳାଇ ପାରିନି । ଭୁଲ ହେଉ କିମ୍ବା ଠିକ୍ ହେଉ ନିଜର ମତକୁ ସେ ଏପରି ଉପସ୍ଥାପନ କରିପାରିଛନ୍ତି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । ସେପରି ଚରିତ୍ର ଖୁବ୍ ବିରଳ । ଯଦି ଶବ୍ଦକୋଷରେ ଦୃଢ ମତବ୍ୟକ୍ତ କରିବାର କୌଣସି ଉଦାହରଣ ଖୋଜାଯାଏ ତେବେ, ତାହା ସଦାନନ୍ଦ ବାବୁଙ୍କ ପ୍ରତି ପ୍ରଯୁଜ୍ୟ ହେବ । ଏହି ଚରିତ୍ର ଯୋଗୁଁ ମୁଁ ଭଲ ଭାବରେ ଜାଣେ । ସେ ବହୁତ ସମୟରେ ନାନା ଅସୁବିଧାର ସମ୍ମୁଖୀନ ହୋଇଛନ୍ତି ଏବଂ ବହୁ ନିଜର ଲୋକଙ୍କୁ ନିଜର କରିପାରି ନାହାଁନ୍ତି, ତଥାପି ତାଙ୍କର ଭ୍ରୂକ୍ଷେପ ନାହିଁ ।

ଦାରିଦ୍ର୍ୟ ଓ ଅବହେଳିତ ସମାଜର ଏକ ତଳ ସୋପାନରୁ ଉଠି ଜୀବନର ସମସ୍ତ ଦିଗରୁ ଏକ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇଥିଲେ ସଦାନନ୍ଦ ମହାନ୍ତି । ଛାତ୍ର ଜୀବନରୁ ବିପ୍ଳବର କଣ୍ଟକ ପଥକୁ ବରି ନେଇ ଜୀବନ ଯାତ୍ରା ଆରମ୍ଭ କରିଥିଲେ ମଧ୍ୟ ସଦାନନ୍ଦ ବାବୁ ଅତ୍ୟନ୍ତ ମାନବବାଦୀ, ସାଧାରଣ ଲୋକଙ୍କର ଦୈନନ୍ଦିନ ଜୀବନ ସହିତ ନିଜକୁ ଓତଃପ୍ରୋତ ଭାବେ ଜଡିତ କରିଥିଲେ ସେ । ଆଜି ତାଙ୍କର ମୃତ୍ୟୁ ପରେ ବହୁ ଲୋକ ଏହି ଅଭାବକୁ ଅନୁଭବ କରିପାରୁଛନ୍ତି । ମୃତ୍ୟୁର କିଛିଦିନ ପୂର୍ବରୁ ମଧ୍ୟ ସାଧାରଣ ଲୋକଙ୍କ ସମସ୍ୟା ନେଇ ଲଢେଇ କରିଛନ୍ତି । ଏଇ ମାତ୍ର ଗତ ଅକ୍ଟୋବର ୨୫, ୨୬ ତାରିଖ ଦୁଇ ଦିନ ଅକ୍ଳାନ୍ତ ପରିଶ୍ରମ କରି, ନିଜର ସମସ୍ତ ସୁବିଧାକୁ ପରିତ୍ୟାଗ କରି ଏବଂ ଡାକ୍ତରମାନଙ୍କ ମନା ସତ୍ତ୍ୱେ ସୁଦୂର ତପ୍ତପାଣି ଠାରେ ୨ ଦିନ ପର୍ଯ୍ୟନ୍ତ ଅକ୍ଳାନ୍ତ ପରିଶ୍ରମ କରି ପାର୍ଟି ସଂଗଠନକୁ ନୂତନ ଜୀବନଦାନ କରି ଓ ପରେ ପରେ ବିଭିନ୍ନ ଗାଁକୁ ଯାଇ ଜନସାଧାରଣଙ୍କ ସହ ମିଶିବା ଆଦି ଘଟଣାରୁ ତାଙ୍କର ଦୃଢ ମନୋବଳର ପରିଚୟ ଦେଇପାରିଛନ୍ତି ।

ପିଲାଟି ଦିନରୁ ତାଙ୍କ ସହ ମୋର ସଂପର୍କ । ଆମ ଘର କମ୍ୟୁନିଷ୍ଟ ପାର୍ଟି, କୃଷକ ସଭା ଆଦି ନାନା ବାମପନ୍ଥୀ ଆନ୍ଦୋଳନର ଏକ ପୀଠସ୍ଥଳି । ତେଣୁ ସମସ୍ତେ ଆସନ୍ତି ଓ ସଦାନନ୍ଦ ବାବୁ ମଧ୍ୟ ବିଭିନ୍ନ ସମସ୍ୟା ନେଇ ଅତି ଜୋରଦାର ଆଲୋଚନା ଏବଂ ବାଦାନୁବାଦ କରନ୍ତି । ଠିକ୍ ପର ମୁହୂର୍ତ୍ତରେ ବନ୍ଧୁତା, ଏହା ଥିଲା ସଦାନନ୍ଦ ବାବୁଙ୍କର ଏକ ଯୁଗାନ୍ତକାରୀ ପଦକ୍ଷେପ । ଦୁଇଥର କବିସୂର୍ଯ୍ୟନଗର ନିର୍ବାଚନମଣ୍ଡଳୀରୁ ଜିତିଲା ପରେ ଏବଂ ଏହି ନିର୍ବାଚନମଣ୍ଡଳୀକୁ ଓଡ଼ିଶା ରାଜନୀତିରେ ସଫଳ ଭାବେ ଉପସ୍ଥାପିତ କରିବା ପରେ ସେ ବହୁ ଜିତଶତ୍ରୁ ସୃଷ୍ଟି କରି ଦେଇଥିଲେ, ଯାହାକୁ ପରିବର୍ତ୍ତନ କରିବା ପାଇଁ ଦୀର୍ଘ ୧୨ ବର୍ଷ ସମୟ ଲାଗିଲା । ତାଙ୍କ ପରେ ଯେତେବେଳେ ଏହି ନିର୍ବାଚନମଣ୍ଡଳୀର ଭାର ୧୯୯୦ ନିର୍ବାଚନ ପରେ ମୋ ମୁଣ୍ଡ ଉପରେ ପଡିଲା, ସେତେବେଳେ ସଦାନନ୍ଦ ବାବୁ ମୋତେ ଆଲୋକ ଦେଖାଇଛନ୍ତି ଏବଂ ଗର୍ବର ସହ "ମୋର ପୁଅ ବିଧାନସଭାରେ ପ୍ରତିନିଧିତ୍ୱ କରୁଛି" ବୋଲି କହିଛନ୍ତି ଓ ତଦନୁସାରେ ବିଭିନ୍ନ ସମସ୍ୟା ବୁଝି ନିଜ ହାତକୁ ନେଇ ସମାଧାନ କରିଛନ୍ତି । ଯେକୌଣସି ରାଜନୈତିକ ସଂକଟର ଏକ ସଫଳ ସମାଧାନ ସଦାନନ୍ଦ ବାବୁ ଅତି ଚତୁରତାର ସହ କରିପାରିଥିଲେ, ଯାହା ଫଳରେ ବାମପନ୍ଥୀ ଆନ୍ଦୋଳନ ଉପରେ ଯେଉଁ ଆଘାତ ବିଭିନ୍ନ ସମୟରେ ଆସୁଥିଲା, ତାହା ଏଡେଇ ଦେଇ ପାରୁଥିଲେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ରାଜନୀତିର ପରିବେଷ୍ଟନି ଭିତରେ ନିଜକୁ ରଖିଥିଲେ ସୁଦ୍ଧା ସେ ଜଣେ ସଫଳକାମୀ ମାନବବାଦୀ ହିସାବରେ ନିଜକୁ ପ୍ରତିଷ୍ଠା କରିପାରିଥିଲେ । ଏଣୁ ରାଜନୀତି ବ୍ୟତିରେକ ବହୁ ବ୍ୟକ୍ତି ତାଙ୍କ ପ୍ରତି ସ୍ନେହ, ଶ୍ରଦ୍ଧା ଢାଳି ଦେଉଥିଲେ ।

ଏପରି ଏକ ମହାନ ଆଦର୍ଶର ମୃତ୍ୟୁ ହୁଏନା ଏବଂ ଆଦର୍ଶ ମେହନତକାରୀ ଜନସାଧାରଣ ନିକଟରେ ଚିର ଜାଜ୍ୱଲ୍ୟମାନ ହୋଇ ରହିବ, ଏଥିରେ ସନ୍ଦେହ ନାହିଁ ।

ସାଥୀ ସଦାନନ୍ଦ ମହାନ୍ତି ଆଉ ଆମ ଭିତରେ ନାହାଁନ୍ତି ଏଇ କଥା ତାଙ୍କର ମୃତ୍ୟୁର ୫ମ ଦିନରେ ମଧ୍ୟ ବିଶ୍ୱାସ ହେଉ ନାହିଁ । ସେ ଯାହାହେଉ, ତାଙ୍କର ଆଦର୍ଶ ଆମକୁ ଚିରଦିନ ରାସ୍ତା ଦେଖାଇବ, ଏହି ବିଶ୍ୱାସ ମୋର ରହିଛି । ସେ ହେବ ସେହି ମହାନ୍ ବ୍ୟକ୍ତିଙ୍କ ପ୍ରତି ଆମର ବିନମ୍ର ଶ୍ରଦ୍ଧାଞ୍ଜଳି ।

ବିଧାୟକ,
କବିସୂର୍ଯ୍ୟନଗର ନିର୍ବାଚନମଣ୍ଡଳୀ

# ଅବିନାଶୀ

*ସୌରୀବନ୍ଧୁ କର

ସଦାନନ୍ଦ ବାବୁ ଚାଲିଗଲେ । ହଠାତ୍ ଏ ସମ୍ବାଦଟି ଟେଲିଫୋନ୍‌ରେ ଜାଣି ମନଟା ମୋର ଅଧିର ହୋଇଗଲା । ସମସ୍ତେ ମରିବେ ଏକଥା ଜାଣି ସୁଦ୍ଧା କେହି ନିଜର ଲୋକଟିଏ, ଆତ୍ମୀୟଟିଏ ମରିଗଲେ ମନ ଦୁଃଖ ହୁଏ । ସଦାନନ୍ଦ ବାବୁଙ୍କ ସହିତ ମୋର ପରିଚୟ ଘଟିଥିଲା ଟ୍ରେନ୍ ଭିତରେ । ୧୯୭୪ ମସିହାରେ ଉତ୍କଳ ଏକ୍ସପ୍ରେସ୍‌ର ପ୍ରଥମ ଶ୍ରେଣୀ ବଗି ଭିତରେ ଭୁବନେଶ୍ୱର ଷ୍ଟେସନ ଠାରୁ ଆମେ ସହଯାତ୍ରୀ ଭାବରେ ଯାତ୍ରାରମ୍ଭ କରିଥିଲୁ । ତାଙ୍କ ହାତରେ ମାର୍କ୍ସଙ୍କର ଜୀବନୀ ସଙ୍କଳିତ ଏକ ପୁସ୍ତକ । ସଦ୍ୟ ପ୍ରକାଶିତ ହୋଇଥାଏ । କମ୍ପାର୍ଟମେଣ୍ଟ ଭିତରେ ଚିହ୍ନା ପରିଚୟ ହେଲା । ସେ ମୋତେ ଅଳ୍ପ ଚ୍ଚିନାପୋଡ ଖାଇବାକୁ କହିଲେ । ମୁଁ କିନ୍ତୁ ମାର୍କ୍ସଙ୍କ ବହିଟିକୁ ଓଲଟପାଲଟ କରିବାକୁ ଲାଗିଯାଇଥାଏ ସେତେବେଳକୁ । ଦୀର୍ଘ ଦୁଇ ଦିନ ରାସ୍ତା ଭିତରେ ଅନେକ ଅସରନ୍ତି ଗଳ୍ପର ପେଟିରେ ଆମ ଆଗରେ ମେଲି ଦେଇଥାନ୍ତି । ଜାଣି ହେଉନଥାଏ, ଟ୍ରେନ୍‌ର ସମୟ ବିତି ଯାଇଥାଏ । ଆମେ ଦିଲ୍ଲୀ ଷ୍ଟେସନରେ ଓହ୍ଲାଇବା ପୂର୍ବରୁ ମୋତେ କହିଲେ, "ତୁମର ବହି ପଢା ଦେଖି ମୋତେ ଭାରି ଖୁସି ଲାଗୁଛି । ମୁଁ ତୁମକୁ ଏ ବହିଟି ଉପହାର ଦେଲି । ତାହା ଲେଖି ଦିଅ । ମୁଁ ତଳେ ଦସ୍ତଖତ କରିଦେବି ।" ସଦାନନ୍ଦ ବାବୁଙ୍କ ଇଂରାଜୀ ଦସ୍ତଖତର ଉପହାର ପାଇଥିବା ସେହି ବହିଟି ଏ ପର୍ଯ୍ୟନ୍ତ ମୋ ବହି ଥାକରେ ରହି ମୋର ପୁରୁଣା ସ୍ମୃତିକୁ ମନେ ପକାଏ ।

ସେହିଦିନ ଠାରୁ ସେଇ ସ୍ୱଳ୍ପ ଚିହ୍ନା ପରିଚୟ ଠାରୁ ଆରମ୍ଭ ହୋଇ, ପରବର୍ତ୍ତୀ ସମୟରେ ବ୍ୟକ୍ତିଗତ ଜଣାଶୁଣାରେ ପରିଣତ ହୋଇଥିଲା । ବହୁ ସମୟରେ ଦେଖାହେଲେ, କେତେ କଥା ପଚାରିବେ, ଗପ ପେଡି ମେଲିଦେବେ । କମ୍ୟୁନିଷ୍ଟ ଦଳର ନିଷ୍ଠାପର କର୍ମୀ ଭାବରେ, ଜଣେ ନେତା ଭାବରେ ସେ ସମଗ୍ର ଓଡିଶାରେ ଅତି ପରିଚିତ ଥିଲେ । ତାଙ୍କର ଅନେକ ବନ୍ଧୁ ଥିଲେ । ସମାଲୋଚକ ମଧ୍ୟ । କିନ୍ତୁ ତାଙ୍କର ପ୍ରଚାର ବାଗ୍ମିତା ଓ ଚିନ୍ତାଶକ୍ତି ନିକଟରେ ଯେଉଁମାନେ ପରିଚିତ, ସେମାନେ ତାଙ୍କୁ ପ୍ରଶଂସା ନକରି ରହି ପାରନ୍ତି ନାହିଁ । ବିଗତ କିଛିବର୍ଷ ଧରି ସୋଭିଏତ୍ ୟୁନିଅନ୍‌ରେ ଘଟୁଥିବା ପରିବର୍ତ୍ତନ ଦେଖି, ସେ ବିସ୍ମିତ ହେଉ ନଥିଲେ । କିନ୍ତୁ ତାଙ୍କର ଅଗାଧ ବିଶ୍ୱାସ ମାର୍କ୍ସବାଦ ଦର୍ଶନରେ, କମ୍ୟୁନିଷ୍ଟ ଆନ୍ଦୋଳନ ଉପରେ ଥିଲା । କିଛିଦିନ ହେଲା ଦେହ ଖରାପ ଯୋଗୁ ସେ ସାଂଗଠନିକ କାର୍ଯ୍ୟରେ ବେଶ୍ ସକ୍ରୀୟ ନଥିଲେ ହେଁ ବିଭିନ୍ନ ସଭାସମିତିରେ ଯୋଗ ଦେବାକୁ ସେ ଭୁଲୁ ନଥିଲେ ।

ସଦାନନ୍ଦ ବାବୁ ଚାଲିଗଲେ । ଭଗବତ୍ ଗୀତାରେ କୁହାଯାଇଛି; "ନାସତୋ ବିଦ୍ୟତେ ଭାବୋ ନା ଭାବୋ ବିଦ୍ୟତେ ସତଃ । ଉଭୟୋରପି ଦୃଷ୍ଟୋରନ୍ତ ସ୍ତ୍ୱନୟୋସ୍ତତ୍ତ୍ୱ ଦର୍ଶିଭିଃ" । ଅର୍ଥାତ୍ ଅନିତ୍ୟ ବସ୍ତୁର ସ୍ଥାୟିତ୍ୱ ନାହିଁ ଓ ନିତ୍ୟବସ୍ତୁର ବିନାଶ ନାହିଁ; ଏହି ଉଭୟକୁ ତତ୍ତ୍ୱଦର୍ଶୀଜ୍ଞାନୀମାନେ ନିର୍ଣ୍ଣୟ କରିଛନ୍ତି । ସଦାନନ୍ଦ ବାବୁ ଏ ତତ୍ତ୍ୱରେ ବିଶ୍ୱାସ କରନ୍ତି କି ନାହିଁ, ମୁଁ ଜାଣେନି କିନ୍ତୁ ତାଙ୍କର ପାର୍ଥିବ ଶରୀର ପୁରୀର ସ୍ୱର୍ଗଦ୍ୱାର ଠାରେ ପାଉଁଶ ମୁଠାରେ ପରିଣତ ହେବା ପରି ପ୍ରତ୍ୟେକ ଅନିତ୍ୟବସ୍ତୁର ସେହି ଏକା ଗତି ହୁଏ । ନିତ୍ୟବସ୍ତୁ ହେଉଛି ତାଙ୍କର କର୍ମ, ତାଙ୍କର ମାନବିକ ଗୁଣ, ମାନବବାଦୀ ବିଚାରଧାରା । ଏହାର ବିନାଶ ହେବ ନାହିଁ ।

ମାର୍କ୍ସଙ୍କର ଜୀବନୀ ସଂକଳିତ ବହିଟି ମୋ ବହି ଥାକରେ ରହି ମୋତେ ବାରମ୍ବାର ସେହି ସହୃଦୟ ମଣିଷଟିର କଥାକୁ ମନେ ପକାଇଦିଏ । ଏହା ମୋତେ ମୋର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ମନେ ପକାଉଥିବ ଏବଂ ମୁଁ ସେହି ଅବିନାଶୀ ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ଚାଲିଥିବି ।

ପ୍ଲଟ୍ ନଂ- ୫୦୧୨/୫୮୫୩
ଗଜପତିନଗର, ଭୁବନେଶ୍ୱର- ୭୫୧ ୦୦୫

କମ୍ୟୁନିଷ୍ଟ ଏବଂ ଗଣତାନ୍ତ୍ରିକ ଆନ୍ଦୋଳନର ଅନ୍ୟତମ ଜ୍ୟୋତିଷ୍କ କ. ସଦାନନ୍ଦ ମହାନ୍ତି—

# ଅନ୍ତିମ ଶ୍ରଦ୍ଧାଞ୍ଜଳି

ଭଗବତୀ ଭବନ ୨୨।୧୧।୯୧

ପୀତାମ୍ବର ପଣ୍ଡା

ସାଥୀ ସଦାନନ୍ଦ ମହାନ୍ତିଙ୍କ ଅମ୍ଳାନ ସ୍ମୃତି ପାର୍ଟିର ରାଜ୍ୟ, କେନ୍ଦ୍ର ଭଗବତୀ ଭବନ ହିଁ ରକ୍ଷା କରିପାରିବ । ସନାତନ ସତ୍ୟକୁ ଅସ୍ୱୀକାର କଲେ ସତ୍ୟର ନିଷ୍ଠୁର ଅପଳାପ୍ ହେବ- ଆମେ ଜାଣୁ ସେହି ମହାନ ଭଗବତୀଙ୍କ ସ୍ମୃତି ସ୍ତମ୍ଭ ସାଥୀ ସଦାନନ୍ଦ ମହାନ୍ତି ସାର୍ଥକ ବିଦ୍ଧାଣୀ ରୂପେ ନିର୍ମାଣ କରିବାର ଗୌରବ ଅର୍ଜନ କରିଛନ୍ତି । ସେ ଆଉ ଆମ ନିକଟରେ ନାହାନ୍ତି । ରାଜ୍ୟ ପରିଷଦର ଭାଷଣ ଦେଉଥିବା ଅବସ୍ଥାର, ସେ ଛବିରେ ସ୍ମୃତିମାନ ହୋଇ ଆମ ମାନଙ୍କର ଶ୍ରଦ୍ଧାଞ୍ଜଳି ଭାଜନ । ଏହା ଖୁବ୍ ଶୀଘ୍ର ହୋଇଗଲା ବୋଲି ମୁଁ ଦୁଃଖରେ ମ୍ରିୟମାଣ ଆଦୌ ଆଶା କରିନଥିଲି । ଆଶା କରି ଥିଲି ଆସିକା ଠାରେ ରାଜ୍ୟ ସମ୍ମିଳନୀ ମଞ୍ଚର ଆଦର୍ଶଗତ ନିପୁଣତାର ସଂଗ୍ରାମ ରାଜନୈତିକ ପରାକାଷ୍ଠା, ତଥା ସାଂଗଠନିକ ଦୃଢ଼ତାର ଅଧ୍ୟାୟ ନୂଆ କରି ଆମେ ଉଭୟେ ବୋଧ ହୁଏ ପାର୍ଟିକୁ ନୂତନ ମୋଡ ନେବାରେ- ବା- ମୁହଁର ନେବାରେ ସମବେତ ଭାବେ ସଫଳ ହୋଇଥାନ୍ତା । ସେ ଅଧ୍ୟାୟ ଆରମ୍ଭ ହେବା ପୂର୍ବରୁ ତାଙ୍କର ଦେହାନ୍ତ ହୋଇଗଲା । ଏହି ଐତିହାସିକ ଆସିକା ମେହନତୀ ମଣିଷର ସଂଗ୍ରାମ ପୀଠସ୍ଥଳୀ । ତାଙ୍କ ସହ ୧୯୬୫ ସାଲ ସମ୍ମିଳନୀରେ ପରିଚୟ ହୋଇଥିଲା । ପ୍ରଥମେ ହେତୁ ହେଲା ସମ୍ମିଳନୀର ଖାଦ୍ୟପେୟ ଆସିକାର ପାର୍ଟିର ବେଷ୍ଟନୀ ଭିତରେ ଥିବା ଗ୍ରାମର ସାଥୀମାନେ ପ୍ରତିଦ୍ୱନ୍ଦ୍ୱିତାର କସରତରେ ମୁଖର ପରିବାର ପଣିଆର ଦକ୍ଷତା କିଏ ଉତ୍କୃଷ୍ଟ ଖାଦ୍ୟର ଆୟୋଜନ କରିପାରିବ । ପ୍ରଥମେ ଶିଖିଲି । ସେହି ସମ୍ମିଳନୀ ତାଙ୍କୁ ରାଜ୍ୟ ସମ୍ପାଦକ ମୁକୁଟରେ ଭୂଷିତ କଲେ । ଆଗରୁ ତାଙ୍କୁ ଆଦୌ ଜାଣି ନଥିଲି । ଖାଇବା ଠାରେ ବସିଥିବା ଅବସରରେ ମୋ ଠାରେ ବସିଲେ ତମର ପରିଚୟ ? ପରିଚୟ ନେଲି- ତୁମେ ତାହାଲେ ସାଥୀ ଗଜେନ୍ଦ୍ର ପ୍ରସାଦ ଦାସଙ୍କ ଭଣଜା । ପୀତାମ୍ବର ଉଚ୍ଚାରଣର ମଧୁରତା ମୁହାଁନେଲା । ମାମୁଁ ଯେଉଁ ଢଙ୍ଗରେ ଡାକନ୍ତି । ବାଲେଶ୍ୱର ଯିବି- Cader ସମାବେଶ ସଭାମାନ ସଂଗଠନ କରିବେ ବୋଲି ସମ୍ବୋଧନ କଲେ ।

୧୯୬୫ ମସିହା ଭାରତ ଉପରେ ପାକିସ୍ତାନର ଆକ୍ରମଣ- ୧୯୬୪ର ପାର୍ଟି ବିଭାଜନ ସାଗର ମନ୍ଥନରୁ ପାର୍ଟିର ନୂତନ ସଂଗ୍ରାମର ସାଙ୍ଗରୁ ସନ୍ତାନ ଭାବେ ନିକଟତର ହେଲୁ । ପ୍ରଥମେ ସୋରରୁ ବାଲେଶ୍ୱର ଜିଲ୍ଲା ପାର୍ଟିର କାର୍ଯ୍ୟକ୍ରମର ଶୁଭାରମ୍ଭକୁ ଉଦ୍‌ଘାଟନ କଲେ । ଖନ୍ତାପଡାର ଏକ ବିଶାଳ ସାଧାରଣ ସଭାରେ କ. ତୁମା ଦାସ ଜଡିତରେ ତୁମ- ସେ ନାହାନ୍ତି । ସେ ଛୋଟା- ତାଙ୍କର ଅବଲମ୍ବନ ଥିଲା ଏକ ଶକ୍ତ ମୋଟଳ ଡେଙ୍ଗା- ତାଙ୍କରି ଘରେ ସଭା ପୂର୍ବରୁ ଦେଢ଼ ଶହ ସାଥୀଙ୍କର ଗହଣରେ ଭେଟ ହେଲା । ସାଧାରଣ ସଭାରେ ଶାସ୍ତ୍ରୀଙ୍କ ଜୟ ଜବାନ, ଜୟ କିଷାନ୍ ଧ୍ୱନୀକୁ ତାଙ୍କର ଓଜସ୍ୱୀନ ଭାଷଣରେ ସତେକି ସଦାନନ୍ଦ ମହାନ୍ତିଙ୍କର ସ୍ଲୋଗାନ ହୋଇଗଲା । ଏହାପରେ ବାହାନଗା ସୋର, ପୀରହାଟ ଏବଂ ଚାନ୍ଦବାଲି ଭାଷଣ । ସାଥୀ ତଥା ଜନସାଧାରଣଙ୍କ ଗହଣରେ ଜଣେ ଉଚ୍ଚକୋଟିର ବାଗ୍ମୀ ରୂପେ ପରିଚିତ ହେଲେ । ପାର୍ଟି ସଂଗଠନକୁ ଜନସ୍ୱାର୍ଥର ଜାଗ୍ରତ ପ୍ରହରୀର ସେନାପତି ଦାୟିତ୍ୱ ବହନ କରିବାର ପ୍ରେରଣା ବିଭାଜନ ବେଳେ ସାରା ଓଡିଶାର ପାର୍ଟିର କଳେବରକୁ ଅକ୍ଷୁର୍ଣ୍ଣ ରଖିବାରେ ପ୍ରେରଣାର ଉତ୍ସ ଥିଲେ ।

ସେତେବେଳେ ସିପିଆଇ. (ଏମ୍) ସିପିଆଇ.କୁ ଦକ୍ଷିଣପନ୍ଥୀ କମ୍ୟୁନିଷ୍ଟ ବୋଲି ଆଖ୍ୟା ଦେଇଥିଲେ । ଏହି ପ୍ରଶ୍ନ ମୁଁ ତାଙ୍କୁ ପ୍ରଥମେ କରିଥିଲି । ମୁଁ ମଧ୍ୟ ତାର ସଠିକ ଉତ୍ତର ସେତେବେଳ ନପାଇ ସିପିଆଇ. (ଏମ୍) ଉପରେ କ୍ଷୁବ୍ଧ ଥିଲି । ଗୋଟିଏ ଧାଡିର ସରଳ ଉତ୍ତର ଦେଲେ, କମ୍ୟୁନିଷ୍ଟ ପାର୍ଟି ଏକ ବାମପନ୍ଥୀ ରାଜନୈତିକ ସଂଗଠନ । ଏହା ଦକ୍ଷିଣପନ୍ଥୀ ହୋଇପାରେନା । ବିଭେଦ କରାଗଲେ ଆକ୍ରାନ୍ତ ଦଳ ହିଁ ଏଭଳି ଅଣ ମାର୍କ୍ସବାଦୀ, ଲେନିନ୍‌ବାଦୀ ସ୍ୱିକାନ୍ତ କରିପାରେ । ଏହା ରାଜନୈତିକ ପ୍ରଳାପ ମାତ୍ର । ଏହା ପଛରେ ତାତ୍ତ୍ୱିକ ଭିତ୍ତି ଭୂମି ଆଦୌ ନାହିଁ । ସମୁଦାୟ ଏ ସତ୍ୟର ସଚ୍ଚୋଟ ଉଦ୍‌ଘାଟନ କରିବା । ତାଙ୍କ କଥା କାଳର କରାଳ ଗତିରେ ଚିରନ୍ତନ ସତ୍ୟଭଳି ଚୀର ଜାଜୁଲ୍ୟମାନ ବିବେଚିତ ହେଲା । ଜାତୀୟ ଗଣତାନ୍ତ୍ରିକ ବିପ୍ଳବର ବାର୍ତ୍ତା ପ୍ରତି ପାର୍ଟି ସଭ୍ୟର ଲକ୍ଷ୍ୟ ବା ଦିଗ୍‌ଦର୍ଶନ ହେବା ବାଞ୍ଛନୀୟ । ଏଇଠୁ ଲେନିନ୍ ଆରମ୍ଭ କରିଥିଲେ ୧୯୦୩ ମସିହାରେ । ସେ ହିଁ ଆରମ୍ଭ କଲେ ପ୍ରତି ଶାଖାର ଲୋକପ୍ରିୟ ତଥ୍ୟ ବୋଧଗମ୍ୟ ବିଚାର ପାର୍ଟିର ଲକ୍ଷ୍ୟ ସଂବିଧାନ ସମସ୍ତଙ୍କ ପାଇଁ ୬ ଶହ ଶାଖାର ସମ୍ମିଳନୀର ଉଦ୍‌ଯାପନ ଜନସଭାମାନଙ୍କରେ ଶେଷ ହେବ । ଶିକ୍ଷାର ଅଭିଜ୍ଞତାର ପରିପ୍ରକାଶ ହେବ । ସଭାର ଗୁରୁ ହିସାବରେ ଜନସାଧାରଣଙ୍କୁ ଶିକ୍ଷା ଦେବେ । ବନ୍ଧୁ ହିସାବରେ ସୁଖ ଦୁଃଖର ସାଥୀ ହେବେ । ଅବ ଶେଷରେ ସେନାପତିର କର୍ତ୍ତବ୍ୟ ପାଳନ କରିବେ । ସେଦିନର ସମ୍ବଳ ବୋଧହୁଏ ଆଜିଯାଏଁ ଆମର ମେରୁଦଣ୍ଡକୁ ଟାଣ କରି ରଖିପାରିଛି । ତାତ୍ତ୍ୱିକ ଭାବେ ଏତେ ଶାଣିତ ବହୁ ସାଥୀ ତାଙ୍କୁ ଭୟ କରୁଥିଲେ । ଏଭଳି ଖୁବ୍ ଖ୍ୟାତ ନାମା ନେତୃସ୍ଥାନୀୟ ବ୍ୟକ୍ତିତ୍ୱ । ଜରୁରୀ ଅବସ୍ଥାର ଇନ୍ଦିରା ଗାନ୍ଧୀଙ୍କୁ ସମର୍ଥନରେ ସେ ଭୂୟସୀ ପ୍ରଶଂସା କରୁଥିଲେ । ତାଙ୍କ ସହ ମୋର ବିରୋଧ ଥିଲା । ଅବଶ୍ୟ ଭାଟିଣ୍ଡା ଠାରେ ସେ ମୋହର ଅବସାନ ଘଟିଲା । ପାର୍ଟିର ତଦନାନ୍ତିନ ଜାତୀୟ ନୀତି ପ୍ରତି Convictionରୁ ଦାତା ଭାଟିଣ୍ଡାରେ ସେ ମୋତେ ପ୍ରଶ୍ନ କଲେ, ଚିଠା

ରାଜନୈତିକ ରିପୋର୍ଟର ବିଶେଷତ୍ୱ କଣ ? ଜାତୀୟ ଗଣତାନ୍ତ୍ରିକ ବିପ୍ଳବ ପୂର୍ବରୁ ବାମ ଗଣତାନ୍ତ୍ରିକ ବିକଳ୍ପ ଗଠନ । ସେ ଖୁବ୍ ଖୁସି ହେଲେ । ସଠିକ ବିଶ୍ଳେଷଣରେ ସେ ଯେ କୌଣସି ଶାଖାର ପ୍ରଶସ୍ତି କରନ୍ତି । ପାର୍ଟି ସଂଗଠନ ବାହାରେ କୌଣସି ବ୍ୟକ୍ତିର ନିନ୍ଦାକୁ ଖୁବ୍ ନାପସନ୍ଦ କରୁଥିଲେ । ଆତ୍ମବଡିମା, (self glorification)କୁ ବରଦାସ୍ତ କରନ୍ତି ନାହିଁ । ବହୁ ସାଥୀ ତାଙ୍କର ସ୍ପଷ୍ଟବାଦୀ ସ୍ୱଭାବ ଲାଗି ସେମାନଙ୍କର ନାସିକା କୁଞ୍ଚନ ଓ ସମାଲୋଚନା ତଥା ତାଙ୍କୁ ଗୌଣ କରି ଲକ୍ଷ୍ୟ ପ୍ରତିପାଦିତ କରିବାରେ ସେ ବହୁବାର ଶରବ୍ୟ ହୋଇଛନ୍ତି । ସେଥିପାଇଁ କଦାପି ଭ୍ରୂକ୍ଷେପ କରି ନାହାନ୍ତି । ପାର୍ଟିର ଆଭ୍ୟନ୍ତରୀଣ ଗଣତନ୍ତ୍ରକୁ ଖୁବ୍ ଗୁରୁତ୍ୱ ପ୍ରଦାନ କରିଥିଲେ । ଅବଶ୍ୟ ଆଭ୍ୟନ୍ତରୀଣ ସଂଗ୍ରାମ ଏକ ଶ୍ରେଣୀ ସଂଗ୍ରାମ ବୋଲି ସାଥୀ ଭୂପେଷ ଗୁପ୍ତଙ୍କ ସମ୍ମୁଖରେ ଦୃଢୋକ୍ତି କଲେ । ମୁଁ ତାଙ୍କ ଉକ୍ତିକୁ J.V. Stalinଙ୍କ ଉକ୍ତି କହି ବିରୋଧ କଲି । ଉଭୟଙ୍କ ମଧ୍ୟରେ ଖୁବ୍ ବଚସା ହେଲା । ସାଥୀ ଗୁପ୍ତ ହସ୍ତକ୍ଷେପ କଲା ପରେ ସେ formulation ସିଦ୍ଧାନ୍ତ ମାନ୍ଧାତା ଅମଳର ଅଳିଆ ଗଦାର ଖୁରାକ୍ ହୋଇଗଲାଣି ବୋଲି କହିବାରୁ, ସେ ନିରୁତ୍ତର ହୋଇଗଲେ । ପ୍ରତ୍ୟେକ ଘଟଣାକୁ ଦ୍ୱନ୍ଦ୍ୱାତ୍ମକ ଭାବେ ବୁଝିବା ଓ ବିଶ୍ଳେଷଣ କରିବା ଥିଲା ତାଙ୍କର ପରାକାଷ୍ଠା । ବାର ବାର ଅସୁସ୍ଥତା ଯୋଗୁଁ ବୋଧ ହୁଏ ବହୁ ପ୍ରଚାରିତ ଘଟଣାକୁ ସମର୍ଥନ କରିଯାଉଥିଲେ । ଏହା ଆଗରୁ ସେ ଅନୁଶରଣ କରୁ ନଥିଲେ । ମୋର ସାଥୀ ସଦାନନ୍ଦ ମହାନ୍ତିଙ୍କ ସହ ଏହି ଅଳିଭାସ୍ମିତି ଲେଖି ମୁଁ ମ୍ରିୟମାଣ ।

ତାଙ୍କର ବିୟୋଗ ଏକ ଅନନ୍ୟ ଆଦର୍ଶଗତ କର୍ଣ୍ଣଧାର, ବାଗ୍ମୀ, ଦେଶପ୍ରେମୀ, ମହାନ ବିପ୍ଳବୀଙ୍କୁ ହରାଇଲା । ତଥାପି ମୋର ସଥୀ ସଦାନନ୍ଦ ମହାନ୍ତିଙ୍କ ସହ ଶେଷ ସାକ୍ଷାତ ହୋଇପାରିଲା ନାହିଁ ।

# ରକ୍ତ ଦେଇ ଶେଷରେ ଜୀବନ ଦେଲ

ରାଜ କିଶୋର ଦାସ

ଦିନେ ଦିନେ ରେଡିଓ, ଟେଲିଭିଜନରୁ ଭଲ ଖବର ଶୁଣିଲେ ମନରେ ଆନନ୍ଦ ଭରି ଉଠେ । ପୁଣି ସେଇଥିରୁ ମନ୍ଦ ଖବର ଶୁଣିଲେ ହତାଦର ସଙ୍ଗେ ଭାବାନ୍ତର ଭରି ଉଠେ । ସେହିପରି ଶ୍ରଦ୍ଧେୟ ସଦାନନ୍ଦଙ୍କ ଅକାଳ ମୃତ୍ୟୁ ମୋତେ ଏକ ଶକ୍ତ ଧକ୍କା, ବୟସରେ ବହୁତ କମ ବୟସ୍କ, ଆଗରେ କନିଷ୍ଠର ମୃତ୍ୟୁ କେତେ ଯନ୍ତ୍ରଣାଦାୟକ, ତାହାର ଅନୁଭୂତି ଅନ୍ୟକୁ ଜଣାଇବା ଦରକାର ପଡେନି । ପିତାମାତାଙ୍କ ଆଗରେ ପୁତ୍ର କନ୍ୟାଙ୍କ ମରଣ କି ଦାରୁଣ, ନିଷ୍ଠୁର ତାହା ଅନୁଭବି ଛଡା ଅନ୍ୟ କେହି ହୃଦ୍‌ବୋଧ କରିପାରିବେ ନାହିଁ । ମୃତ୍ୟୁ ହିଁ କେବଳ ଭାବାନ୍ତର ଆଣେ । ଜନ୍ମ ହେଲେ ମୃତ୍ୟୁ ଅନିର୍ବାର୍ଯ୍ୟ । ସଦାନନ୍ଦ ତୁମେ କଣ ଜାଣି ନଥିଲ ସ୍ୱାଧୀନତା ଆଣିବାର ଆନନ୍ଦରେ ଗୁଳି ଗୁଳିରେ ଜୀବନଟା ଖଣ୍ଡା ଧାରରେ ରଖି ଚାଲୁଥିଲ ? ଛାତ୍ର ଆନ୍ଦୋଳନ, ଶ୍ରମିକ ଆନ୍ଦୋଳନ, କୃଷକ ଆନ୍ଦୋଳନରେ ସାମାଜିକ ପରିବର୍ତ୍ତନର ଲକ୍ଷ୍ୟ ପଥ ଧରି ନେଇଥିଲ ।

ନାଁଆଟା ଥିଲା ସଦାନନ୍ଦ । ନାମ ସଙ୍ଗେ ଗୁଣର ସମନ୍ୱୟ ଥାଏ । ଯେ ଥରେ ତୁମ ସଙ୍ଗେ ଦେଖା କରିଛି, ନତୁବା ତୁମ ସଙ୍ଗେ ଆନ୍ଦୋଳନରେ ଭାଗ ନେଇଛି, ତୁମର ହସ-ହସ ମୁହଁ, ରହସିଆ, ମଧୁର କଥାରେ ବିଭୋର ହେଉଥାଏ । ସେଥିରେ ଥାଏ ଆନ୍ଦୋଳନ ଓ ସଂଗଠନ ଇତ୍ୟାଦିରେ ଉଚ୍ଚକୋଟିର ପ୍ରେରଣା । ଏଇଥିପାଇଁ ତୁମ ଠାରୁ ଦୂରେଇ ଆସିବାକୁ ଇଚ୍ଛା ହୁଏନି । ସମନ୍ୱବାଦୀ ଚିନ୍ତାଧାରା, ଅହଂଗର୍ବ ତୁମ ଠାରେ ଲେଶମାତ୍ର ଦେଖିବାକୁ ମିଳେନା । କଥାରେ ଯାହା କୁହ କାର୍ଯ୍ୟରେ ତାହା ପରିଣତ କର । ତୁମର ସେ ଓଜସ୍ୱିନୀ ବକ୍ତୃତା, ଛାତ୍ର, କୃଷକ, ଶ୍ରମିକ, ବୁଦ୍ଧିଜୀବୀମାନଙ୍କୁ ଅପୂର୍ବ ପ୍ରେରଣା ଯୋଗାଇ ଦେଇଛି । ଏପରିକି ମଲା ଦୁବ ଘାସ ଓଡିଶାର ପ୍ରତି କନ୍ଦି ବିକନ୍ଦିରେ ତୁମେ ବଞ୍ଚାଇ ଚାଲିଥିଲ । ବିଧାନସଭାରେ ବହୁତ ତାତ୍ତ୍ୱିକ ଭାଷଣମାନ ଦେଇଛ । କାରାଗାରଟାଯାକ ତୁମ ସାଥୀ କର୍ମୀମାନେ ଥିଲେ ପରିବାର । ବିପ୍ଳବୀ ଜୀବନଟା କଟାଇ ଚାଲିଥିଲ । ତୁମେ ଚାହିଁଥିଲେ ମନ୍ତ୍ରୀପଦ ତୁମ ପାଦ ତଳେ ଥିଲା । ସୁଗନ୍ଧ ଫୁଲମାଳ ଫିଙ୍ଗିଛ । ତୁମେ ନ'ମରି କିଏବା ମରିଥା'ନ୍ତା ? ଏ ପରିଣତ ବୟସରେ ମୋର ଭଙ୍ଗା ମନଟାକୁ ସାନ୍ତ୍ୱନା ଦେଉଛି । ମୋର ସାଙ୍ଗସାଥୀମାନେ ଯେତେବେଳେ ମ୍ରିୟମାଣ ହୋଇ "ଆହା ସଦାନନ୍ଦ ବାବୁ ମରିଗଲେ" ଏ ପ୍ରଶ୍ନର ଉତ୍ତର ଏତିକି କହି ତାଙ୍କୁ ସାନ୍ତ୍ୱନା ଦେଉଛି । ସଦାନନ୍ଦ ତୁମେ ଜାଣିଶୁଣି ମରଣ ବରଣ କରି ଚାଲିଥିଲ । ଦେଶ ପାଇଁ ରକ୍ତ ଜୀବନ ସାରା ଦେଇଛ । ଘିଅ, ମହୁ, ଦୁଗ୍ଧ, ଅମୃତ ଖାଇତ କେହି ବଞ୍ଚିନି । ସଦାନନ୍ଦ ତୁମେ କେବେ ଅର୍ଦ୍ଧାହାର, ଅନାହାର, ନିଜେ ବରଣ କରିଥିଲ । ତୁମ ପାଇଁ ମରଣ ନ ହୋଇ ଆଉ କାହା ପାଇଁ ହୋଇଥା'ନ୍ତା ? ରକ୍ତ ଦେଲ ଶେଷରେ ଅକାଳରେ ଦେଶ ପାଇଁ, ଜାତି ପାଇଁ, ଓଡିଆ ପୁଅର ଟେକ ରଖିବା ପାଇଁ । ନିଜର ଜୀବନଟାକୁ ଶେଷରେ ଜଳାଞ୍ଜଳି ଦେଲ ।

ତାଳଚେର ଟାଉନ୍

# ବଡ ଭାଇ ସଦାନନ୍ଦ

**କ୍ଷୀରୋଦ ନାୟକ**

ଓଡିଶାର ବରେଣ୍ୟ କମ୍ୟୁନିଷ୍ଟ ନେତା ତଥା ପୂର୍ବତନ ବିଧାୟକ ୰ସଦାନନ୍ଦ ମହାନ୍ତି ଆଉ ନାହାନ୍ତି । "କ୍ଷୀରୋଦ, ୧୯୯୨ ମୋ ପାଇଁ ଆସିବନି" ତାଙ୍କରି କଥା ଆଜି ମନକୁ ମୋର ଅସ୍ଥିର କରୁଛି । କେତେ କଥାତ ସେ ମତେ ଏମିତି କହନ୍ତି, ସେମିତି ସେ କହିଥିଲେ । ତାଙ୍କ କଥା କଣ ସତରେ ଘଟିଗଲା ? ମୋ ଆଖି ଆଗରୁ ସେ ଏମିତି ୧୯୯୨ ମସିହା ଆଗରୁ ଲୁଚିଗଲେ ? ଜୀବନ ଏମିତି ଆସେ- କେତେ ଆଶା, କେତେ କାମ କରିବାର ଉତ୍ସବ, ଉଦୀପନା, କେତେ ଦ୍ୱନ୍ଦ୍ୱ, କେତେ ଝଡ, ଝଂଜା ସବୁ ଭିତରେ ହଠାତ୍ ଏମିତି ସରିଯାଏ । କାହିଁ ଏତେ ଲୋକ ଆମେ ତ ଥିଲୁ କିଛି କରିପାରିଲୁ ନାହିଁ ।

ମନେ ପଡୁଛି— ୧୯୬୦-୬୧ ମସିହା- ହରିହର ଦାସ, ମୁଁ ଆଉ ରମାକାନ୍ତ ପଣି ସାଥୀ ହୋଇ ତାଙ୍କ ଛତ୍ରପୁର ଘରକୁ ଯାଇଥିଲୁ । ଛୋଟିଆ ଘରଟିଏ, ଖଟଖଣ୍ଡେ, ଚଉକିଟିଏ ପଡିଛି । ଆମେ ପହଞ୍ଚିଲା ବେଳକୁ ସେ ପାର୍ଟିର କଣ ଏକ ରିପୋର୍ଟ ଲେଖୁଥିଲେ । ଆମକୁ ପଢି ଶୁଣାଇଲେ । ୧୫ ଦିନ ତଳେ ତାଙ୍କର ପୁଅଟିଏ ମରିଯାଇଛି । ସେଇଦିନ ମୋର ତାଙ୍କ ସହିତ ପ୍ରଥମ ଦେଖା । ହରିହର ଦାସ କହିଲେ— ଓଡିଶା କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ପାଇଁ ଯଦି କେହି ଯୋଗ୍ୟ ବ୍ୟକ୍ତି ଥାଆନ୍ତି ସେ ହେଉଛନ୍ତି ସଦାନନ୍ଦ ମହାନ୍ତି । କିନ୍ତୁ ତାଙ୍କର ସ୍ପଷ୍ଟବାଦିତା ଓ ସାଲିସବିହୀନ ଗୁଣ ପାଇଁ ପାର୍ଟିର କିଛି ସଭ୍ୟ ତାଙ୍କୁ ହୁଏତ ଅନୁମୋଦନ କରି ନପାରନ୍ତି । କିନ୍ତୁ ସେଇ ସଦାନନ୍ଦ ଭାଇନା ଦୁଇଟି ପର୍ଯ୍ୟାୟରେ ରାଜ୍ୟ କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ହେଲେ । ପ୍ରଥମେ ୧୯୬୫ରୁ ୧୯୬୮, ୨ୟ ପର୍ଯ୍ୟାୟ ୧୯୭୩-୧୯୮୬ । କେବଳ ସେତିକି ନୁହେଁ ୧୯୬୫ରୁ ଶେଷ ଜୀବନଯାଏ ସେ ସି.ପି.ଆଇ ଜାତୀୟ ପରିଷଦର ସଦସ୍ୟ ରହିଥିଲେ । ଦୀର୍ଘକାଳ ଧରି ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ଥିଲେ । ୧୯୭୧ ଓ ୭୪ ଦୁଇଥର ସେ କବିସୂର୍ଯ୍ୟନଗର ନିର୍ବାଚନମଣ୍ଡଳୀରୁ ରାଜ୍ୟ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ସେ ରାଜ୍ୟ ଛାତ୍ର ସଂଘ ଆନ୍ଦୋଳନର ଟାଣୁଆ ନେତା ଭାବେ ନିଜର ପରିଚୟ ଦେଉଥିଲେ । "ମୁଁ ସଦାନନ୍ଦ ମହାନ୍ତି କମ୍ୟୁନିଷ୍ଟ, କହୁଛି" । ସତେ ଯେମିତି ସେଥିରେ ସେ ଗର୍ବ ଅନୁଭବ କରୁଥିଲେ । ଫୋନ ଏପଟୁ ତାଙ୍କରି ଏଇ କଥା ସତେ କୁଆଡେ ଆଜି ଅନନ୍ତ ବାୟୁମଣ୍ଡଳ ଭିତରେ ଶୂନ୍ୟରେ ମିଳାଇଗଲା । ସେ ପରିଚୟ ଫୋନ ଏପଟୁ ଆଉ କେହି ଶୁଣିବେନି । ୧୫ ଦିନ ତଳର ପୁତ୍ରହରା ପିତା ଯେ କମ୍ୟୁନିଷ୍ଟ ପାର୍ଟିର ରିପୋର୍ଟ ଲେଖି ବସିଛି, ଆଉ ଆମକୁ ଶୁଣାଉଛି, ମୋର ତରୁଣ ମନକୁ ସେଦିନ ପ୍ରଭାବିତ କଲା । ତା'ପରେ ତାଙ୍କରି ସ୍ପଷ୍ଟବାଦିତା- ଯାହା ଠିକ୍ ସେ ତାକୁ କହିବେ- ମୋ ସହିତ ତାଙ୍କର ଏଇ ଚାରିତ୍ରିକ ମେଳ ଆମ ଦୁହିଁଙ୍କ ଭିତରେ ବନ୍ଧନର ସୂତ୍ରପାତ କରିଥିଲା ।

୧୯୬୮ ମସିହା— ମୋର ବିଭାଘର । ଆଗରୁ ଝିଅ ଘର ଓ ଝିଅକୁ ସେ ଜାଣିଥିଲେ । ମତେ ଆସି କହିଲେ..... "ସବୁ ଦେଖି ମୁଁ ୫୦% ଅନୁମୋଦନ କଲି ତା'ପରେ ଆଉ ୫୦% ତମେ ଦେଖି ବିଚାର କରି ସେଠି ବିଭାହେବ କି ନାହିଁ ମନ ସ୍ଥିର କର" । ସେ କି ଆନ୍ତରିକତା ଓ ମମତା ଭରା ବିଚାର । ଜ୍ୟେଷ୍ଠ ଭ୍ରାତାର ନିର୍ଦ୍ଦେଶ, ସେ ବିଚାରରେ ନଥିଲା କି ତାଙ୍କ ବିଚାର ଯେ ଠିକ୍ ବିଚାର, ମତେ ତାହା ପ୍ରଭାବିତ କରୁ ସେପ୍ରକାର ମନବୃତ୍ତି ନଥିଲା । କିନ୍ତୁ ତା' ଭିତରେ ନିରାଟ ବାସ୍ତବ ଓ ମମତାଭରା ଆନ୍ତରିକତା ଥିଲା । କ୍ଷୀରୋଦ ତା' ପସନ୍ଦ ଓ ମନଲାଖି ସାଥୀଟିଏ ବାଛି ନେଉ । କିନ୍ତୁ ୫୦%ର ବିଚାର କନ୍ୟା ବାଛିଲା ବେଳେ କେଉଁ ପିତା ବା ଜ୍ୟେଷ୍ଠ ଭ୍ରାତା ନିଜର ପୁଅକୁ ବା ଭାଇକୁ ଆଜି କହିପାରୁଛି ? ହୁଏତ ତାଙ୍କରି ପସନ୍ଦ ମତେ ପ୍ରଭାବିତ କରିଥିଲା । ମୁଁ ସେଇଠି ବିଭା ହେବା ପାଇଁ ସ୍ଥିର କଲି । ଆଉ ସେ ମୋର ଆହୁରି ନିଜର ହୋଇଗଲେ । ବଡ ଭାଇର ଶ୍ରଦ୍ଧା । ଆନ୍ତରିକତା, ସ୍ନେହ ଆମ ଦୁହିଁଙ୍କର ବନ୍ଧନକୁ ସୁଦୃଢକରି ତୋଳିଲା । ଆଜି ସେ ମୃତ କିନ୍ତୁ ମୋ ସ୍ମୃତିରେ କେତେ ଜୀବନ୍ତ ଓ ବାସ୍ତବ । ଅତୀତକୁ ଫେରି ହେବନି- ଆଖି ବୁଜି ବସିଲେ ସ୍ମୃତିରେ କେତେ ଚିତ୍ର ନାଚି ଉଠୁଛି ।

ଏଇଠି ସେଦିନ ବିଭାଘର ଦୁଇତିନି ମାସ ପରେ ମୁଁ ଓ ମୋ ସ୍ତ୍ରୀ ତାଙ୍କୁ ଛତ୍ରପୁର ଜେଲ୍‌ରେ ଦେଖା କରିବାକୁ ଯାଇଥିଲୁ, ସେ ହଠାତ୍ ଆମକୁ ଦେଖି କହି ବସିଲେ- "ଆସିଲ ଭଲ କଲ, ଭାଉଜକୁ ( ତାଙ୍କ ସ୍ତ୍ରୀଙ୍କୁ) ଟ ୨୫.୦୦ ଦେଇଦେବ ଆଉ ଚିନି ୧ କେ.ଜି. ଆଣି ଦିଅ- ଜେଲ୍‌ରେ ଆମର କମ୍ରେଡ୍ ମାନଙ୍କର ଦରକାର" । ସେ ତ ନିଜେ ବହୁମୂତ୍ର ରୋଗୀ, ଚିନି ଖାଉ ନଥିଲେ । ତାଙ୍କ ମନରେ କେତେବେଳେ ଏଇ ଧରଣର ଛୋଟ, ବଡ ଅନୁରୋଧ କରିବାରେ ଦ୍ୱିଧା କି ସଂକୋଚ ନଥିଲା । ବନ୍ଧୁମାନଙ୍କ ପାଖରେ ଦରକାର ପଡିଲେ ଏଇ ଧରଣର ସ୍ପଷ୍ଟ ମନୋଭାବ ପ୍ରକାଶ କରି ସେ ସମସ୍ତଙ୍କୁ ନିଜ ପରିବାରର ଜଣେ ବୋଲି ଧରି ନେଉଥିଲେ । ଏଇ ଅନନ୍ତ ମାନବିକତାର ଉତ୍ସ ଆମ ଭିତରେ ଆଜି ଆଉ ନାହାନ୍ତି । ତାଙ୍କରି ସ୍ମୃତି ଆଜି ଆମକୁ ବିହ୍ୱଳ କରୁଛି । ଜନ୍ମ ହେଲେ ମୃତ୍ୟୁ ନିଶ୍ଚିତ । କିନ୍ତୁ ମୃତ୍ୟୁ ସହିତ ସ୍ମୃତି ତ ମନରୁ ପୋଛି ହୋଇଯାଉନି ? ବନ୍ଧୁମାନଙ୍କ ପାଇଁ ତାଙ୍କର ଭାବନା, ବନ୍ଧୁମାନଙ୍କ

ପକ୍ଷରେ ଖୋଲା ଖୋଲି ଭାବରେ ନିଜର ମତ, ବଡ ଅନୁରୋଧ କେତେ ସହଜ ଓ ସରଳ ଭାବରେ ସେ ପ୍ରକାଶ କରି ପାରୁଥିଲେ । ଆଉ ଆମେ ନିଜର ଅତି ଆପଣାର ଲୋକ ପାଖରେ କିଛି ଚାହିଁବା ଆଗରୁ କେତେ ମାପି, ଚୁପି ଭଲ ମନ୍ଦ ବିଚାର କରି ପ୍ରକାଶ କରୁଛୁ । କାଳେ ଆମ ଭଲ ପାଇବା ଭିତରେ ତିକ୍ତତା ବା ମନମାଳିନ୍ୟ ଆସିଯିବ । କିନ୍ତୁ କାହିଁ, ତାଙ୍କ ସହିତ ଏତେଦିନ ମିଶିବା ପରେ ବି ମୁଁ ତାଙ୍କର ଏଇ ପ୍ରକାଶ ଭଙ୍ଗିରେ ଅଭିଭୂତ ହୋଇଥିଲେ ବି ନିଜେ ତ କାହାକୁ ସେପରି ଅନୁରୋଧ କରିପାରୁନାହିଁ ? ତାଙ୍କ ପାଇଁ ଯାହା ସହଜ ଥିଲା, ମୋ ପାଇଁ ତା' କେବଳ ଆଦର୍ଶରେ ରହିଗଲା । ସେଇଦିନଠୁ ଆମ ଦୁଇ ପରିବାର ଭିତରେ ଏକ ବନ୍ଧନ ଗଢି ଉଠିଲା । ତାଙ୍କର ପିଲାମାନେ ମତେ କାକା ଡାକନ୍ତି । ମୋ ପିଲାମାନେ ଭାଇନା, ଭାଉଜଙ୍କୁ ବଡ ବାପା, ବଡ ବୋଉ ଡାକି ଆସୁଛନ୍ତି । ଆଜି ମୋରି ସାନପୁଅ, ଯେ'କି ଆଇଁଷ ନ ହେଲେ ଖାଇ ବସେନା ତା' ମନକୁ ମନ ବଡ ବାପାଙ୍କ ପାଇଁ ପାଳୁଛି । ଭାଇନାଙ୍କର ପିଲାମାନେ କାକା ଡାକିଲେ ମୁଁ ଦଉଡି ଯାଉଛି । ତାଙ୍କରି ପାରିବାରିକ ଜୀବନ ମୋ ପାଖରେ ଏକ ଖୋଲା ପୁସ୍ତକ ଥିଲା । ସେଥିରେ ଛଳନା ନଥିଲା । ସବୁ ଯେପରି ଜାଣି ହେଉଥିଲା, ଦେଖି ହେଉଥିଲା । ସେ'ତ ଏକାନ୍ତ ନିଜସ୍ୱ ଅନୁଭୂତି । ଅନୁଭବ କରିହୁଏ, କହିହୁଏନି । ବଡ ଭାଇର ଆଦର, ଯତ୍ନ କିଛି ନ ଖୁଆଇ ଛାଡି ନ ଦବା, ମନର ଏଇ ଭାବ-ପ୍ରବଣତା ଆଜି ତ ଆଉ ମିଳିବ ନାହିଁ ? ତାଙ୍କରି ଘରେ ଆଜି ପହଞ୍ଚିଗଲେ ମନେ ହେଉଛି ସତେ ଯେପରି ସେ କହୁଛନ୍ତି, "ଆରେ କ୍ଷୀରୋଦ ଯେ ଚାଲିଯାଉଛି, ତାକୁ କିଛି ଖାଇବାକୁ ଦେଲନି ଯେ- "ମୁଁ ନୁହେଁ କେହି ଗଲେ ତାଙ୍କୁ କିଛି ନ ଖୁଆଇ ସେ ଛାଡନ୍ତି ନାହିଁ । ଛଳନା ନାହିଁ, ଅଭିମାନ ନାହିଁ । ଅହମିକା ନାହିଁ, ଏଇତ ଭଲ ମଣିଷ ପଣିଆ । ସମସ୍ତେ ତାଙ୍କର ଆପଣାର, ସମସ୍ତେ ତାଙ୍କର ନିଜର, ବନ୍ଧୁବତ୍ସଳ ମନ ତାଙ୍କର । ବନ୍ଧୁଟିଏ ଦେଖିଲେ ସବୁ ସମୟରେ, କେମିତି ଆନନ୍ଦ ଉଲ୍ଲାସରେ ଭରି ଉଠେ । ଗଭୀର ଭାବରେ ତାଙ୍କ ସହିତ ଯିଏ ମିଶିଛି ତା' ସେ ଅନୁଭବ କରିଛି ।

୧୯୬୫ ମସିହା । ମୁଁ ସେ ସମୟରେ ପାର୍ଟିର କର୍ମୀ ଭାବରେ କଟକରେ କାର୍ଯ୍ୟ କରୁଥାଏ । ସେ ସେତେବେଳେ ପାର୍ଟିର ସମ୍ପାଦକ ଥାଆନ୍ତି । ମୋର ଚଳିବାକୁ ଅସୁବିଧା ହେଉଥାଏ । କଥାଚ୍ଛଳରେ ମୁଁ ତାଙ୍କୁ ସେତେବେଳେ କହିଲି, ପଇସା ନପାଇଲେ ମୁଁ ଖାଇବି କଣ ? ତାଙ୍କରି ଉତ୍ତର ଏବେବି ମୋ ସ୍ମୃତି-ଜଗତରେ ଜୀବନ୍ତ ହୋଇ ରହିଛି । "ମୁଁ ମାଗିକରି ଚଳୁଛି- ତୁ ସେହିପରି ପ୍ରତିଦିନ ଜଣେ ଜଣେ କମ୍ରେଡ୍‌ଙ୍କ ଘରେ ମାଗି କରି ଖାଇ କମ୍ୟୁନିଷ୍ଟ ହୋଇ ରହିବୁ" । ଏଇ ସଂସ୍କୃତି, ସେ କମ୍ୟୁନିଷ୍ଟ ପାର୍ଟି ଭିତରେ ବଞ୍ଚାଇ ରଖିବାକୁ ଚାହୁଁଥିଲେ । ନିଜ ଜୀବନରେ ମଧ୍ୟ ସେଇ ନୀତିରେ ସେ ଅନୁସରଣ କରିଥିଲେ । ନିଜ ପରିବାର ପାଇଁ ଯଦି କେତେବେଳେ କିଛି ଦରକାର ପଡୁଥିଲା ସେକଥା ସେ ନିଜର କମ୍ରେଡ୍ ମାନଙ୍କୁ ବିନା ଦ୍ୱିଧାରେ କହିଦେଉଥିଲେ । ଏଇ ନୀତି ତାଙ୍କୁ ନିଷ୍ଠାପର କମ୍ୟୁନିଷ୍ଟ ହୋଇ ରହିବାରେ ସାହାଯ୍ୟ କରିଥିଲା । ତାଙ୍କର ଜୀବନ ଐଶ୍ୱର୍ଯ୍ୟ ଆଉ ପ୍ରାଚୁର୍ଯ୍ୟ ଭିତରେ କଟି ନଥିଲା । ନାନା ଅଭାବ, ଅସୁବିଧା, ରୋଗ, ଦୁଃଖ ଭିତରେ ବି ସେ ନିଜକୁ କମ୍ୟୁନିଷ୍ଟ ବୋଲି ଦୃଢ ସ୍ୱରରେ କହି ସେଇ ନୀତିକୁ ଅନୁସରଣ କରି ଚାଲିଗଲେ । କିନ୍ତୁ ସେଦିନ, ମୋ ମନ ତାଙ୍କ କଥା ଅନୁସାରେ କମ୍ରେଡ୍ ମାନଙ୍କ ଘରେ ଦିନେ ଦିନେ ଖାଇ ପାର୍ଟି କାମ କରିବାକୁ ମାନି ନେଇ ନଥିଲା । ମୁଁ ଓକିଲାତି କରି ବସିଲି । ବ୍ୟକ୍ତିର ପାର୍ଥକ୍ୟ ତ ଏଇଠି ? ତାଙ୍କର ଏହି ନୀତି ପୁରା ଭାବରେ ଜୀବନର ଅଙ୍ଗ କରିନେବା ଏତେ ସହଜ କଥା ନୁହେଁ । ଦେଶ ପାଇଁ ବ୍ୟକ୍ତିଗତ ଜୀବନକୁ ଏତେ ନୁଆଁଇ କାମ କରିବାର ମଣିଷ ଆଉ କାହିଁ ? ଏଇଥିପାଇଁ ସେ ସାରା ଜୀବନ କମ୍ୟୁନିଷ୍ଟ ପାର୍ଟି ଭିତରେ ଟିକି ପାରିଲେ । ଏତେ ନିଷ୍ଠା, ଏତେ ଏକାଗ୍ରତା, ନିର୍ଭୀକତା, ଭାବ ପ୍ରବଣତା ତାଙ୍କୁ ସବୁଦିନେ ଆମ ଭିତରେ ବଞ୍ଚାଇ ରଖିଥିବ, ହୁଏତ ତାଙ୍କର ଏହି ଜୀବନ ଧାରା ଅନୁସରଣ କରିଥିଲେ ବହୁତ କର୍ମୀ ଆଜି ପାର୍ଟି ଛାଡି ନଥାଆନ୍ତେ ।

ସେ ଜଣେ ସୁବକ୍ତା । ଥରେ ନିମାପଡାରେ ନିର୍ବାଚନ ପାଇଁ ଏକ ସଭା ପରେ ମୋହନ ଦାସ କହିବସିଲେ ଏମିତି ଯଦି ସଦାନନ୍ଦ ୪ଟି ସଭାରେ ଭାଷଣ ଦିଅନ୍ତି ତା'ହେଲେ କମ୍ୟୁନିଷ୍ଟ ପାର୍ଟି ନିମାପଡାରେ ଜିତିଯିବ । ତାଙ୍କର ଭାବପ୍ରକାଶ କରିବାର ଶୈଳୀ ସ୍ୱତନ୍ତ୍ର ଥିଲା । କାରଣ ତାଙ୍କର ମନର ଚିନ୍ତାଧାରା ସବୁବେଳେ ଦୃଢ ବିଶ୍ଳେଷଣ ଉପରେ ପର୍ଯ୍ୟବେଶିତ ଥିଲା । ଯାହା ସେ କହୁଥିଲେ ବହୁତ ଦୃଢତାର ସହିତ କହୁଥିଲେ । ତାଙ୍କର କଥା କହିବାର ଶୈଳୀ ଖୁବ୍ ସୁନ୍ଦର ଥିଲା । ଢଗ, ଢମାଳି ସହ ସଜାଇ ସାଧାରଣ ଭାବରେ ସେ ସବୁବେଳେ କଥା କହୁଥିଲେ । ତାଙ୍କ ସାଙ୍ଗରେ ଯେ କେହି ମିଶିଲେ ଭଲ ଲାଗୁଥିଲା ।

ମନେ ପଡୁଛି, ଥରେ ମୁଁ ତାଙ୍କୁ କହିଥିଲି, '2nd line of leadership ଗଢନ୍ତୁ' । ସେ ତା'ର ଉତ୍ତର ଦେଇଥିଲେ— "ତୁ କଣ ବୁଝି ପାରୁନୁ । ତାହାହିଁ ମୁଁ କରୁଛି ?" ପାର୍ଟିର ସମ୍ପାଦକ ଥିଲାବେଳେ ସେ ପାର୍ଟିର ଅଭିବୃଦ୍ଧି ପାଇଁ ସଦା ଜାଗ୍ରତ ଥିଲେ । ପାର୍ଟିର ପୁରୁଣା କମ୍ରେଡ୍ ମାନଙ୍କ ପାଇଁ ତାଙ୍କ ମନରେ ସର୍ବଦା ଏକ ଅତୁଟ ଶ୍ରଦ୍ଧା ଥିଲା । ନୀତିଗତ ସାଲିସ୍ ତାଙ୍କ ଦ୍ୱାରା ହୋଇ ପାରି ନଥିଲା । ରାଜନୈତିକ ଭ୍ରଷ୍ଟାଚାରକୁ ସେ ସର୍ବଦା ବିରୋଧ କରୁଥିଲେ ଏବଂ ଅନେକ ସମୟରେ ଖୋଲାଖୋଲି ଭାବରେ ପ୍ରକାଶ କରୁଥିଲେ । ରାଜନୈତିକ ମତଭେଦ ଥିଲେ ବି ଅନ୍ୟ ପାର୍ଟିର ବନ୍ଧୁମାନଙ୍କସହିତ ତାଙ୍କର ସୁ-ସମ୍ପର୍କ ଥିଲା । ପ୍ରଶାସନିକ ଅଫିସର ମହଲରେ ତାଙ୍କର ଆଦର ବେଶୀ ଥିଲା ।

ଜଣେ କୌଣସି ବିଷୟ ସାହାଯ୍ୟ ମାଗିଲେ ସେ ସାହାଯ୍ୟ କରିବାକୁ ଆଗଭର ହେଉଥିଲେ । ତାଙ୍କ କାନରେ ସେ କଥା ପଡିଗଲେ ସେ ବ୍ୟତିବ୍ୟସ୍ତ ହୋଇ ପଡୁଥିଲେ ସବୁ ସମୟରେ ସବୁ ବୟସରେ । ବୟସ ହୋଇଯାଇଛି । ସବୁ ପ୍ରକାର ରୋଗ ଦେହ ଭିତରେ ବସା ବାନ୍ଧିଲାଣି । ସେଥିପାଇଁ ଚିନ୍ତା ନାହିଁ । କହିଛନ୍ତି 'ଚାଲନା ସେ କାମଟା ସାରି ଦେଇ ଆସିବା' । କାହାର ଦରକାର ପଡିଲେ କାହା ପାଇଁ ଟିକିଏ କେଉଁଠି କହିବାକୁ ପଡିବ, ସେଥିପାଇଁ ଦ୍ୱିଧା ନାହିଁ । ସେଇ ଆନ୍ତରିକତା ଅନ୍ୟକୁ ମୁଗ୍ଧ କରିଛି । ଏ କଥାତ ଭୁଲିହେବାର ନୁହେଁ କି ଭୁଲି ହୁଏନି । ଅନୁଭବ ଭିତରେ ତାଙ୍କର ସ୍ମୃତି ଚିରନ୍ତନ ।

ରାଜ୍ୟ କମ୍ୟୁନିଷ୍ଟ ପାର୍ଟିର ମୁଖ୍ୟ କାର୍ଯ୍ୟାଳୟ ତିଆରି ଥିଲା ତାଙ୍କର ଏକ ନିଶା । ୧୯୭୯ ମସିହା 'ଭଗବତୀ ଭବନ' ତିଆରି ପାଇଁ ତାଙ୍କର ସେଇ ବ୍ୟାକୁଳତା । ପକ୍ଷାଘାତ ରୋଗରୁ ସଦ୍ୟ ଉଠିଥାନ୍ତି । ଦିନରାତି ବସିଛନ୍ତି, ବୁଲି, ବୁଲି ଚାନ୍ଦା ଆଦାୟ କରିଛନ୍ତି । ଅଯାଚିତ ଭାବରେ ତାଙ୍କୁ ଚାନ୍ଦା ସମସ୍ତେ ଦେଇଛନ୍ତି । ସେ ନିଷ୍ଠା ଆଉ ଏକାଗ୍ରତାର ମୂକସାକ୍ଷୀ । "ଭଗବତୀ ଭବନ" ତାଙ୍କରି ସ୍ମୃତିର ସ୍ମାରକ ହୋଇ ରହିଯାଇଛି ।

ପାର୍ଟି କାମରେ ସେଥର ସେ ବାଲେଶ୍ୱର ଯାଇଥିଲେ । ହଠାତ୍ ଗାଧୁଆ ଘରେ ପଡିଯାଇ ଗୋଡ ତାଙ୍କର ଭାଙ୍ଗି ଯାଇଥିଲା । ଭଗ୍ନ ସ୍ୱାସ୍ଥ୍ୟ ନେଇ ସେ ପାର୍ଟି କାମ କରି ଯାଉଥିଲେ । ସେଇ ଯେ ଗୋଡ ଭାଙ୍ଗିଗଲା ରୁଷିଆରେ ମଧ୍ୟ ପରେ ଚିକିତ୍ସା ହୋଇ ପାରିଲାନି । ସେଥିପାଇଁ ତ ତାଙ୍କର ପାର୍ଟି କାମ କରିବାକୁ କୁଣ୍ଠ ନଥିଲା ? ସେହି ଅଦମ୍ୟ ଆଗ୍ରହର ଉତ୍ସ ତାଙ୍କ ଅନ୍ତରରେ କୁଆଡୁ ଆସୁଥିଲା ?

ବି.ଜେ.ବି. ସ୍କୁଲର ପ୍ରତିଷ୍ଠା ଦିନରୁ ଆଜି ପର୍ଯ୍ୟନ୍ତ ସେ ସବୁବେଳେ ମୋ ସାଥୀରେ, ଅନ୍ତରାଳରେ ସହଯୋଗ କରି ଆସିଛନ୍ତି । ତାଙ୍କର ପରାମର୍ଶ, ତାଙ୍କର ଆଲୋଚନା ଛଳରେ ଦୋଷ ତ୍ରୁଟିର ସ୍ପଷ୍ଟୀକରଣ ଆଉତ କେହି ଏମିତି ଆଗଭର ହୋଇ କହିବସିବ ନାହିଁ ? କେହିତ ଆଉ କହିବ ନାହିଁ, ଚାଲନା ପ୍ୟାରି ବାବୁଙ୍କୁ ତମର ସମସ୍ୟାଟା ବୁଝାଇ କହିବା' । କଣ ବା' ଦରକାର ଦୁନିଆ ଯାକର ସମସ୍ୟାକୁ ମୁଣ୍ଡ ଭିତରକୁ ଆଣି ସମାଧାନ ପାଇଁ ବନ୍ଧୁମାନଙ୍କୁ ଧରି ପ୍ୟାରି ବାବୁଙ୍କ ପାଖକୁ ଯିବା । କିନ୍ତୁ ସେ ମଣିଷ ସେଇ ଧାତୁରେ ଗଢା । ଯାହା ସେ ଉଚିତ ମନେ କରିବେ, କରିବାକୁ ପଛାଇବେ ନାହିଁ ।—

ଏ ବର୍ଷ ଦଶହରା ବେଳକୁ ଗଞ୍ଜାମ ଜିଲ୍ଲାର ପାର୍ଟି Executive Meeting ପାଇଁ ବନ୍ଧୁମାନଙ୍କର ଅନୁରୋଧ ରକ୍ଷା କରି ସେ ବାହାରିଲେ । ମତେ କହିଲେ, ମୁଁ ମନା କଲି । ମନା ନ ମାନି ଗଲେ । ଆଉ ଫେରି ଆସି ଶଯ୍ୟାଶାୟୀ ହେଲେ । ଏଇତ ତାଙ୍କ ଜୀବନ । ତା' ଆଗରୁ ଶରତ ପଟ୍ଟନାୟକ ଓ ଏସ୍.ପି. ଗନ୍ତାୟତ ବାବୁଙ୍କର ଆକସ୍ମିକ ମୃତ୍ୟୁ ତାଙ୍କର ମାନସିକ ଅବସ୍ଥାକୁ ମୃତ୍ୟୁ ଆଡକୁ ତ୍ୱରାନ୍ୱିତ କରିଥିଲା ।

ତା'ପରେ ଭୁବନେଶ୍ୱର ଡାକ୍ତରଖାନାକୁ ଯିବା ଆଗରୁ ମୁଁ ଆଉ ମୋ ସ୍ତ୍ରୀ ତାଙ୍କ ଘରେ ପହଞ୍ଚିଥିଲୁ । "କଣ ଜ୍ୟୋତ୍ସ୍ନା, ମତେ ବାଟେଇ ଦବାକୁ ଆସିଲ ? କ୍ଷୀରୋଦ ମତେ ଡାକ୍ତରଖାନାକୁ ନେଉଛି, ମୁଁ ଆଉ ଫେରିବି ନାହିଁ-" ଏଇ କଥା ତାଙ୍କର ଥିଲା ଶେଷ କଥା । ସତରେ ସେ କଣ ଜାଣି ପାରୁଥିଲେ ସେ ଆଉ ଘରକୁ ଫେରିବେ ନାହିଁ ? କେତେ ନିରାଟ ବାସ୍ତବ ହେଲେ ବି ସେତେବେଳେ ମନ କହୁଥିଲା ଏମିତି କଥା କାହିଁକି କହୁଛନ୍ତି ? ସେ ଭଲ ହୋଇଯିବେ ।

ଆଉ ଆଜି, ସେ ସତରେ ତାଙ୍କରି କଥା ରଖି ଆଉ ଫେରିଲେ ନାହିଁ । ତାଙ୍କର ମର ଶରୀରକୁ ଧରି ଆମେ ଘରକୁ ଫେରି ଆସିଲୁ । ଅଭିମାନ କରି ସେ ଚିର ନିଦ୍ରାରେ ଶୋଇ ପଡିଥିଲେ । କମ୍ୟୁନିଷ୍ଟ ପାର୍ଟିର ସେଇ ଅଗ୍ରଣୀ ନେତା ସତରେ ଯେମିତି ଅଣହେଳାରେ ଅଭିମାନ କରି ଶୋଇଯାଇଛନ୍ତି ଆଉ ସେ ଉଠିବେନି—

ହେ ଜ୍ୟେଷ୍ଠ ଭ୍ରାତା ତଥା ବନ୍ଧୁ, ତମ ପାଇଁ ମୋର ଆଉ କହିବାର କିଛି ନାହିଁ—

"I would be thinking about you,
The ring is round and has no end,
And So is my friendship with you my friend"

ଜି-୧୧, ବି.ଜେ.ବି. ନଗର
ଭୁବନେଶ୍ୱର-୧୪

# ଲାଲ ସଲାମ ନିଅ

ସୁଭାସ ଚନ୍ଦ୍ର ମହାପାତ୍ର

(ଵ/ସଦାନନ୍ଦ ସ୍ମରଣେ)

**ରାଗ- କଲ୍ୟାଣ ଆହାରୀ**

ବେଠିଖଟା ଖଟିଖି଼ଆ ମେହେନତି ମଣିଷ ଉଠିନି ଆହୁରି
ସାହୁ ଶୋଷଣର ନାଗପାଶୁ ବନ୍ଧୁ ବାହୁଡି ହେ ଗଲ କିପରି
ପାଶୋରି, ପ୍ରିୟଜନ ମାଟି ମାଆରେ ସୁପ୍ତ ସରକାରେ
କିଏ ଚେତାଇବ ଦୃପ୍ତସ୍ୱର ବଜ୍ର ହୁଙ୍କାରେ —୧—
ଦେଶ ପାଇଁ ଲଢିଥି଼ଲ ଅଣ୍ଟା ଭିଡି ପଢା ଛାଡି ଲୋଡି ହଡିକି
ତଡି ଦେବା ପାଇଁ ଫିରିଙ୍ଗି ରାଇଜୁ ଖାତିରି ନକରି ବାଡିକି
ଯା' ଫଳେ, ମାଆ ପାଦୁ ବେଡି ଫିଟିଲା
ତ୍ୟାଗ ପାଇଁ ଭୋଗ ଲୋଡୁ ନେତୃବର୍ଗ ଜନତା କପାଳ ଫାଟିଲା —୨—
କଳା ସାଇବଙ୍କ କଳା କାରବାର ମିଶି ପୁଞ୍ଜିପତି ସହିତେ
ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲ ଦାଆ ହାତୁଡି ଧରି ହାତେ
ସ୍ୱାଧୀନ, ଭାରତରେ ଶ୍ରମ ଜୀବୀର
ନ୍ୟାଯ୍ୟ ଅଧି଼କାର ପାଇଁ ତତ୍ପର ଭୁଲି ସୁଖ ଦୁଃଖ ନିଜର —୩—
ମୂଲ୍ୟବୋଧ ଭିତ୍ତି ହୀନ ରାଜନୀତି ଗଣତନ୍ତ୍ର ପ୍ରତି ବିପଦ
ପ୍ରଚାର ତୁମ୍ଭର ହେଲାକି ବିଫଳ ସେ ଯୋଗୁ ଲଭିଲି ବିଷାଦ
କିଅବା, ବିଶ୍ୱେ ସାମ୍ୟବାଦ ପତନ
ଅଧି଼କ ନଦେଖି଼ବାକୁ ବୁଜି ଆଖି଼ଦେଲ ସଂଘଠକ ପ୍ରଧାନ —୪—
ସଦାନନ୍ଦ ନାମ ସାର୍ଥକ କରିଛୁ କଦାପି ଗଞ୍ଜାମ ଜନତା
ଭୁଲି ନପାରିବୁ ସେବା ତ୍ୟାଗ ତୁମ ଆଦର୍ଶ ରାଜନୀତି କଥା
ଅନ୍ତିମ, ବେଳେ ନିଅ ଲାଲ ସଲାମ
ହେ ସାଥୀ । ହେ କର୍ମୀ । ପରଉପକାରୀ ଆର ପୁରେ ଲଭ ବିଶ୍ରାମ —୫—

ସହକାରୀ ନିବନ୍ଧକ, ଓ.ସି.ଏସ୍
ବ୍ରହ୍ମପୁର

# ଜଣକୁ ଜଣେ

—ଶ୍ରୀଚରଣ ବରାଳ

ଭାଇ ସଦାନନ୍ଦ, ସନନ୍ଦେ ଗ୍ଲଲିଲ
ପଚ୍ଛକୁ ଗ୍ହିଁଲ ନାହିଁ ?
କେତେ ପ୍ରାଣପ୍ରିୟ ଡାକି ରହିଥିଲେ
ପଥ ଓଗାଳିବା ପାଇଁ ।
ଚିର ଅମାନିଆ ଅରଣକୁ କେଭେ
ବାରଣକି କରି ହୁଏ ?
ବାଟ କଢ଼େଇବା ସାରଥୀକୁ ପୁଣି
ଅବାଟରେ ନେଲା କିଏ ?
'ସାଥୀ' ବୋଲି ଡାକି ପେଖନା କରିନ
'କମ୍ରେଡ' କହି କରତ ଗ୍ଲଳିନ
ମୁକୁଳା ମନର ଅମଳ ଆଦର
ଢାଳିଚ୍ଛ ସକଳ ପାଇଁ,
ଦଳ, କାଳ, ଛଳ, କୂଳର ବିଗ୍ଲର ନାହିଁ ।
ଦେଶର, ଦଶର ସମସ୍ୟା ବଖାଣି
ନିଜ ସମାଧାନ କରିନ
ସତ ସାଙ୍ଗରେ ସାଲିସ ନ ଥିଲା ।
ଗୀର୍ବାଣ ଚିର ତରୁଣ ।
କେତେ କହିବାର ଅକୁହା ରହିଲା !
କେତେ ଅନୁଭବ ସ୍ମୃତିରେ ଶୋଇଲା !
ହେ ମହାନ ନେତା ! ମାନିନେଲ ମହାପ୍ରୟାଣ ?
କାନ୍ଦିବାର ମୋ ବୟସ ବଢ଼ିଛି
ବନ୍ଧିବା ଯତକେ ନାହିଁ
କି ଦେଇ ଦେବି ମୁଁ ମନର ମେଲାଣି
ଥଳକୂଳ ପାଉ ନାହିଁ ।
ନିର୍ବାକ ମୋର ଉର୍ଦ୍ଧ୍ୱ ଗ୍ହାଣି
ଦିବ୍ୟ ଚିତ୍ତରେ ବୁଝିବ
ଅପୂରଣ ଯଦି ରହିଲା ଲଢ଼େଇ
ଯୁଝିବାର ଥିଲେ ଯୁଝିବ ।

-ଆଡ୍‌ଭୋକେଟ୍,
୨୪/ବି, ଡାକ୍ତର ସୁରେଶ ସର୍କାର ରୋଡ୍
କଲିକତା- ୧୪

# OUR CONDOLENCES

*Deeply Shocked at sad* ***Sadanand's*** *death. Convey Condolence to his family and all party.*

By
Jagannath Sarkar
Member, Central Executive Committee
C.P.I., Patna.

---

*Estremely grieved at* ***Mr. Sadananda Mohanty's*** *demise. Kindly convey our feelings to family.*

Promod Bhanjdeo, Ex- M.L.A.
Baripada,

---

*Our heartfelt condolences on the death of* ***Com. Sadananda Mohanty.*** *Please convey to his family.*

Secy. Communist Party of India,
Patamundai, Rajnagar Zone.

# ସଦାନନ୍ଦ ବିୟୋଗେ........

ମୋର ବନ୍ଧୁ, ସାଥୀ, ସହକର୍ମୀ, ନେତା ସଦାନନ୍ଦ ମହାନ୍ତିଙ୍କର ବିୟୋଗରେ ମୁଁ ବ୍ୟଥିତ । ହୃଦୟର କୋହ ସମ୍ଭାଳି ପାରୁନି । ତାଙ୍କର ଘର କୁଟୁମ୍ବ ଓ ମୋର ଘର କୁଟୁମ୍ବର ଅନେକ ସମସ୍ୟା ସେ ଜାଣନ୍ତି ଓ ଆମ୍ଭେ ପରସ୍ପର ଜାଣୁ । ସୁଖ, ଦୁଃଖ ଆଲୋଚନା କରୁ । ଭୁବନେଶ୍ୱରସ୍ଥ ତାଙ୍କ ନୂଆ ଘରକୁ ୨ ଥର ଯାଇଛି । କିନ୍ତୁ ଏବେ ବାଟ ଜାଣି ପାରିଲିନାହିଁ । ପାର୍ଟିର ଭୁବନେଶ୍ୱର ପାର୍ଟି କେନ୍ଦ୍ରଠାରୁ ମୋର ଅନ୍ତରାଳରେ ସେ ଘର କରି ରହିଲେ । ଏଣୁ ସମ୍ପର୍କ ବିଶେଷ ରହିଲା ନାହିଁ । ଗତ କିଛିଦିନ ହେଲା ସେ ରୋଗାକ୍ରାନ୍ତ ଥିଲେ । ଚିକିତ୍ସା ପାଇଁ ସ୍ୱୀକ ରୂଷ ଯାଇଥିଲେ । ସେ ରୋଗୀ ଅବସ୍ଥାରେ ଥାଆନ୍ତି । କିନ୍ତୁ ବିଚଳିତ ଥିଲାପରି ଜାଣି ପାରୁନଥିଲି । ଅବଶ୍ୟ ମରିଯିବା କଥା କହୁଥିଲେ । ଶେଷ ପର୍ଯ୍ୟନ୍ତ କଣ୍ଠସ୍ୱର ପୂର୍ବଭଳି ଥିଲା । ଏହି ନଭେମ୍ବର ୧୧ ତାରିଖରେ ଆମ ଉଭୟଙ୍କର ନାଲକୋ ଯିବା ପ୍ରୋଗ୍ରାମ୍ ଥିଲା । ମୋର ପୁଅ ସଚ୍ଚିଦାନନ୍ଦର ଅବ୍ୟବସ୍ଥିତ କର୍ମ ନେଇ କିଛି ସମାଧାନ ପାଇଁ ଉଭୟେ ଯାଉଥାନ୍ତୁ । ମୁଁ ୧୧ ତାରିଖରେ ଗଲାବେଳକୁ ସେ ଡାକ୍ତରଖାନାରେ ଶଯ୍ୟାଶାୟୀ । ଆଖିଖୋଲି ଶୋଇବାଠାରେ ମୋତେ ଚିହ୍ନି ଦେଲେ । ରୋଗୀ ସହିତ କଥା ବାର୍ତ୍ତା କରିବା ଠିକ୍ ହେବନାହିଁ ବୋଲି ଆଖିକୁ ଆଖି ପରସ୍ପର ଦେଖା ଦେଖି ହୋଇ ଫେରିଲି । ତାଙ୍କ ଖବର ରଖୁଥିଲି । କିଛି ଖରାପ କଥା ଶୁଣୁନଥିଲି । ବରଂ ଭଲ କଥା ଶୁଣୁଥିଲି । ଡାକ୍ତରଖାନାରୁ କଟକକୁ ସ୍ଥାନାନ୍ତର ହେବା ପରେ ମଧ୍ୟ ଭଲ କଥା ଶୁଣୁଥିଲି । କିନ୍ତୁ ମୋର ସନ୍ଦେହ ରହୁଥିଲା । ସନ୍ଦେହ ସତରେ ପରିଣତ ହେଲା ।

ତାଙ୍କ ଜୀବିତାବସ୍ଥାରେ ତାଙ୍କର ଦୁଇଝିଅଙ୍କୁ ପଢ଼ାପଢ଼ି କରିବା ସହିତ ବିବାହ ଦେଇ ସାରିଛନ୍ତି । ପୁଅ ମଧ୍ୟ ଆବଶ୍ୟକ ଶିକ୍ଷା ଲାଭ କରି କ'ଣ ଗୋଟାଏ ବ୍ୟବସାୟ କାରଖାନା କରୁଛନ୍ତି ବୋଲି ଜାଣିଛି । ଭଲ ଘର ଖଣ୍ଡିଏ ମଧ୍ୟ କରି ସାରିଛନ୍ତି । କିନ୍ତୁ ଦୁଃଖର କଥା, ତାଙ୍କର ପ୍ରିୟତମା ପତ୍ନୀ ଶକୁନ୍ତଳାଙ୍କୁ ନିରାଶ କରିଛାଡ଼ି ଦେଇ ଗଲେ ।

୧୯୫୦ ମସିହା ବେଳକୁ ଆମ୍ଭେ ଦୁହେଁ ବ୍ରହ୍ମପୁର ଜେଲରେ ଥିଲୁ । ସେଠାରେ ଆମେ ପରସ୍ପର ତୀବ୍ର ବିରୋଧୀ । ଜେଲରେ ଥିବା ସାଥୀମାନେ ପରସ୍ପର ଦୁଇଭାଗ । ରାଜନୈତିକ ବିରୋଧିତା ବ୍ୟକ୍ତିଗତ ଶତ୍ରୁତାରେ ପରିଣତ ହୋଇଥିଲା ସେଠାରେ । ଆମେ ଦୁଇଜଣ ଦୁଇ ଗ୍ରୁପ୍‌ର ନେତା ହୋଇଗଲୁ । ସର୍ବୀସ୍ତୁ ପାର୍ଟି ସଭ୍ୟ ନଥିବା ବହୁ ସାଥୀ ମୋ ସହିତ ରହିଗଲେ । ଗୋବିନ୍ଦ ପ୍ରଧାନ ସହ ଆମ୍ଭେ ଜେଲରେ ଥିବା ବେଳେ ଦ୍ୱିତୀୟବାର ଅନଶନ କରିବା ପ୍ରସ୍ତାବରେ ସଦାନନ୍ଦ ସହିତ ଗୋବିନ୍ଦ ପ୍ରଧାନ ଓ ମୁଁ ଏକମତ ହୋଇ ପାରିଲୁନାହିଁ । ଯେହେତୁ ଆମେ ଦୁହେଁ ବହୁଦିନ ଅଣ୍ଡରଗ୍ରାଉଣ୍ଡରେ ଗାଁକୁ ଗାଁ । ବୁଲି ସମ୍ପର୍କ ରଖିଥିଲୁ । ଲୋକମତ ବୁଝି ନେଇଥିଲୁ । ଶେଷକୁ ଅବସ୍ଥା ଏପରି ହେଲା, ଯେଉଁମାନେ ଆଗନ୍ତର ସହ ଆମ୍ଭଙ୍କୁ ଘରେ ରଖୁଥିଲେ, ସେମାନେ ଆଉ ଧରାଛୁଆଁ ଦେଲେ ନାହିଁ ।

ଗୋବିନ୍ଦ ବାବୁ ଓ ମୁଁ ଅଣ୍ଡରଗ୍ରାଉଣ୍ଡରେ ଥିଲାବେଳେ ୫୦ ଦିନିଆ ହଙ୍ଗରଷ୍ଟ୍ରାଇକ୍ ଜେଲରେ ହୋଇଥିଲା । ସେଥିରେ ଗୁଣୁପଡ଼ାର ରଘୁନାଥ ପଣ୍ଡା ଓ ଡାକରଡା ଗୋବିନ୍ଦ ପ୍ରଧାନଙ୍କ ଭାଇ ରାଧାକୃଷ୍ଣ ପ୍ରଧାନଙ୍କର ଅବସ୍ଥା ସଂକଟାପନ୍ନ ହୋଇ ଗଲା । ବାହାରେ ଲୋକମାନେ କହୁଥିଲେ ଅଯଥା କାହିଁକି ଅନଶନ କରୁଛନ୍ତି । ଖାଇ ପିଇ ଭଲରେ ରୁହନ୍ତୁ । ଏ ଦୁଷ୍ଟ ସରକାର ପାଖରେ ଅଭିମାନ କାହିଁକି ? ରାଜନୀତି କିଛି ବୁଝନ୍ତିନାହିଁ । ଆମେ ମଧ୍ୟ ଅନଶନକାରୀଙ୍କୁ ସମର୍ଥନ କରି ଜନ ଆନ୍ଦୋଳନ କରିପାରି ନଥିଲୁ ।

ଏସବୁ ରଣଦିବେଙ୍କ ରାଜନୀତି ବେଳର କଥା । ପାର୍ଟିର ସର୍ବୋଚ୍ଚ ନେତା ଓ ନୀତି ନିର୍ଦ୍ଧାରଣକାରୀ ବିଜୟ ଚନ୍ଦ୍ର ଦାସଙ୍କୁ ବ୍ରହ୍ମପୁର ଜେଲରୁ ସମ୍ବଲପୁର ଜେଲକୁ ସ୍ଥାନାନ୍ତରିତ କରାଯାଇଥିଲା । ସେ ରଣଦିବେ ରାଜନୀତିରେ ଶେଷ ଆଡ଼କୁ ବିଶ୍ୱାସ ରଖିନଥିଲେ । ଭାରତ ସରକାରଙ୍କ ନୂତନ ସମ୍ବିଧାନ ପ୍ରକାଶ ପାଇଲା ପରେ ବିଜୟ ବାବୁଙ୍କ ଚିନ୍ତାଧାରା ବଦଳିଥିଲା । ଏଠିକି ବେଳକୁ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସର୍ବୋଚ୍ଚ ନେତା ଡାଙ୍ଗେ, ଘୋଷ, ଏପରି ତିନି ଜଣଙ୍କର ମତ ପରିବର୍ତ୍ତନ ଖବର ସର୍କୁଲାର ଆମ ପାଖରେ ପହଞ୍ଚିଗଲା । ଏଣୁ ଗୋବିନ୍ଦ ପ୍ରଧାନ ଓ ମୁଁ ସେହିମତକୁ ଗ୍ରହଣକରି ଜେଲଖାନାରେ ଥିବା ପରସ୍ପର ବିରୋଧୀ ଗ୍ରୁପ୍ ମାନଙ୍କୁ ଏକାଠି କରି ବିଜୟ ହାସଲ କଲୁ । ଜେଲଖାନାରେ ଥିବା ସମୟରେ ଆମ୍ଭେ ଦୁଇଜଣ ହାଇକୋର୍ଟର ନିର୍ଦ୍ଦେଶରେ ବିଧାନ ସଭାରେ ଲଢ଼ିବା ପାଇଁ ଦରଖାସ୍ତ କଲୁ ।

ରାଜନୀତି ଯିନା ବଦଳିଲା, କିନ୍ତୁ ବ୍ୟକ୍ତିଗତ ଶତ୍ରୁତା ବହୁଦିନ ପର୍ଯ୍ୟନ୍ତ ରହିଗଲା । ସଦାନନ୍ଦ ମହାନ୍ତିଙ୍କର ଗ୍ରୁପ୍ ଦ୍ୟୁତିକୃଷ୍ଣ ପଣ୍ଡା ଓ ଜଗନ୍ନାଥ ସ୍ୱାମୀ ପ୍ରମୁଖଙ୍କ ସହିତ ବିରୋଧିତା ମନଭିତରୁ ଏ ପର୍ଯ୍ୟନ୍ତ ଯାଇନାହିଁ । ଶେଷ ବେଳକୁ ସଦାନନ୍ଦ ମହାନ୍ତିଙ୍କ ସହିତ

ମୋର ଘନିଷ୍ଠ ବନ୍ଧୁତା ବଢ଼ିଲା । ପାର୍ଟି ଭିତରେ ସଦାନନ୍ଦର ବ୍ୟକ୍ତିଗତ କଥାବାର୍ତ୍ତା ଅନେକ ନେତାଙ୍କୁ ବାଧୁଥିଲା । ସଦାନନ୍ଦ ଅନେକ କାର୍ଯ୍ୟରେ ପାର୍ଟିଭିତରେ ଏକମତ ହୋଇ ପାରୁନାହିଁ । ମୋ ସହିତ ଅନ୍ୟ କେତେକ ବନ୍ଧୁ ମଧ୍ୟ ଏକମତ ହୋଇ ପାରୁନାହାନ୍ତି । ତାଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ତେବେ ପୂର୍ବ ତାଙ୍କ ପ୍ରତି ଭକ୍ତି ଓ ସମ୍ମାନ ଊଣା ହୋଇନ । ସଦାନନ୍ଦ ତାଙ୍କ ମତକୁ ସାବ୍ୟସ୍ତ କରିବା ପାଇଁ ଜବରଦସ୍ତ ଆଲୋଚନା କରନ୍ତି । ସଫଳ ମଧ୍ୟ ହୁଅନ୍ତି । ସେ ଜଣେ ପାର୍ଟିର ଝାଣ୍ଡୁଆ ନେତା । ପାର୍ଟି ବାହାରେ ସାଧାରଣ ଲୋକ ଦୃଷ୍ଟିରେ ସୁଦକ୍ଷ ବକ୍ତା । ଶତ୍ରୁକୁ ନିର୍ମମ ଭାବେ ଉପହାସ କରି ଭାଷଣ ଦିଅନ୍ତି । ଜନସଭାରେ ଲୋକ ଚକ୍ଷୁରେ ସେ ଶ୍ରଦ୍ଧାଭାଜନ ହୋଇଥାନ୍ତି । ପାର୍ଟିର ନୀତି ଅନୁସାରେ କାର୍ଯ୍ୟ କରିବା ପାଇଁ ତାଙ୍କୁ ବହୁ ସହକର୍ମୀ ମିଳନ୍ତି । ଶତ୍ରୁମାନଙ୍କ ସହିତ ବ୍ୟକ୍ତିଗତ ବ୍ୟବହାର ଅତି ଉତ୍ତମ । ଅନ୍ୟ ଦଳର କର୍ମୀ ଓ ନେତାଙ୍କୁ ନିଜର କରି ନେବାର କୌଶଳ ଭଲଭାବେ ଜଣା । ସେ ଜଣେ କୌଶଳୀ । କୌଶଳୀ ନ ହେଲେ ରାଜନୀତି କରି ହେବ ନାହିଁ । ସେ ଜଣେ ରାଜନୀତିଜ୍ଞ । ବହୁ ସାଥୀଙ୍କର କାର୍ଯ୍ୟରେ ଓ ବ୍ୟକ୍ତିଗତ କାର୍ଯ୍ୟରେ ସଫଳ ଉଦ୍ୟମ କରିଛନ୍ତି । ସେହି ସାଥୀମାନେ ତାଙ୍କ ପ୍ରତି କୃତଜ୍ଞତା ଏବେ ମଧ୍ୟ ପ୍ରଦର୍ଶନ କରନ୍ତି । ମୋର ମଧ୍ୟ ସେ ଦୁଇଟି କାର୍ଯ୍ୟରେ ସହାୟକ ହୋଇଛନ୍ତି । ସେଥିପାଇଁ ତାଙ୍କ ନିକଟରେ ମୁଁ କୃତଜ୍ଞ। ତାଙ୍କ ଘରର ସମସ୍ତେ ମୋତେ ନିଜର ଆପଣାର ଲୋକ ବୋଲି ଦେଖନ୍ତି । କେବଳ ମୁଁ ନୁହେଁ ବହୁ ସାଥୀ ସମର୍ଥକ ଓ ତାଙ୍କର ବ୍ୟକ୍ତିଗତ ବନ୍ଧୁମାନେ ତାଙ୍କ ପ୍ରତି ଏବେ ସୁଦ୍ଧା କୃତଜ୍ଞ ଅଛନ୍ତି । ଅନେକ ସଚ୍ଚା ଅଫିସର ଜୀବିତ ଓ ମୃତ ସଦାନନ୍ଦ ପ୍ରତି ଘନିଷ୍ଠତା ରଖିଆସିଥିଲେ ।

ଆଳପୁର ଗାଁରେ ସଦାନନ୍ଦ ଘରେ ବିଜୟ ଦାସ ମାସ ମାସ ଧରି ରହୁଥିଲେ । ସଦାନନ୍ଦର ସକଳ କୁଟୁମ୍ବ କମ୍ୟୁନିଷ୍ଟ ବା ସମର୍ଥକ । ଅନ୍ୟ ସମସ୍ତ ଭାଇ ଚାଲି ଗଲେଣି । ସଦାନନ୍ଦ ଶେଷକୁ ଗଲେ । ବୟସ ସେପରି କିଛି ଅଧିକ ନୁହେଁ, ମୋ ଠାରୁ ବହୁତ ସାନ । ଶେଷ ବେଳକୁ ମୋ ଆଗରେ ଓ ପଛରେ ବହୁ ପ୍ରଶଂସା କରି କହୁଥାନ୍ତି । ତାଙ୍କ ପୂର୍ବରୁ ମୁଁ ମରିବାର ଆଶା ରଖିଥିଲି । ମୋ ଆଶା ନିରାଶା ହେଲା ।

ସଦାନନ୍ଦ ତୁମକୁ ପ୍ରଣାମ କରୁଛି । ମୋର ଆତ୍ମା ସମ୍ପର୍କରେ ବିଶ୍ୱାସ ନାହିଁକି ଅବିଶ୍ୱାସ ନାହିଁ । ତେଣୁ ତୁମର ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରୁନି । ତୁମର କର୍ମପ୍ରବଣତା ପାର୍ଟିଭିତରେ ଅନ୍ୟ ସାଥୀମାନଙ୍କଠାରେ ଉଦୟ ହେଉ ଏହାହିଁ ମୋର କାମନା ।

**ହରିହର ଦାସ**
**ଅସିକା**



# ଅପରାଜିତ

କି ସ୍ୱପ୍ନରେ ସେ ଅଭିଭୂତ ଥିଲେ କେଜାଣି ? ନୟନର ଦୁଇଟି ଉଜ୍ଜ୍ୱଳ କନୀନିକାରେ ପ୍ରଚଣ୍ଡ ଦୀପ୍ତି । ସେଇ ପ୍ରାଣଭରା ଉନ୍ମୁକ୍ତ ହସ । ହସି ହସି ସେ ପୁରୁଷୋତ୍ତମପୁରର ରାଜପଥ ଉପରେ ଉଦ୍ଦାମ ପଦପାତ କରି ହାତ ହଲାଇ ହଲାଇ ଆସୁଥିଲେ, ନଥିଲେ ତାଙ୍କ ପାଖରେ ଚାମଚା ଦଳ । ଫୁଲ ମାଳଟିଏ ବି କେହି ଝୁଲାଇ ଦେଇ ନଥିଲା ତାଙ୍କ ଗଳାରେ । ନଥିଲା ଜିପ୍ ମାଇକ୍‌ର ଶୋଭାଯାତ୍ରା । ଆମମାନଙ୍କୁ ଦେଖି ସେ ହଠାତ୍ ଅଟକି ଗଲେ ଓ ହସି ହସି କହିଲେ, ପିଲେ ଚାଲ ସଭା କରିବା । ପାଖ ହୋଟେଲରୁ ଭଙ୍ଗା ଚୌକି ଖଣ୍ଡେ ଆଣି ଆମ ଭିତରୁ ଜଣେ ପିଲା ରାସ୍ତାକଡ଼ରେ ରଖିଦେଲା ଓ କହିଲା 'ସାର୍' ବସନ୍ତୁ' ।

ସେ ଠୋ ଠୋ ହସିଲେ 'ମୋ ପାଇଁ ଚୌକି କି ଲୋଡ଼ା ?' ହେଉ ପିଲାଟା ଚୌକିଟା ଆଣିଛି, ନ ବସିଲେ ତା ମନ କଷ୍ଟ ହେବ । ସେ ଚୌକି ଉପରେ ଧୁମ୍‌କରି ବସିପଡ଼ିଲେ ଓ ହଠାତ୍ ଚୌକିର ଗୋଟେ ଗୋଡ ଭାଙ୍ଗିଗଲା । ସେ ଓଲଟି ପଡ଼ୁ ପଡ଼ୁ ଠିଆ ହୋଇ ପଡ଼ିଲେ ଓ ଭାଷଣ ଆରମ୍ଭ କଲେ । କି ଉଦାତ୍ତ କଣ୍ଠସ୍ୱର ! ଯେଉଁମାନେ ଦୂରରେ ଥାଇ 'କମ୍ୟୁନିଷ୍ଟ'ଟା ........ବୋଲି ଥୁସୁ ନଥିଲେ ସେମାନେ ଧିରେ ଧିରେ ସଭାସ୍ଥଳକୁ ଆସିଲେ । ସେ ବୁଝାଇଲେ ନିର୍ଯ୍ୟାତିତ ମଣିଷର କଥା, ଗରିବ ଚାଷୀ ମୂଲିଆର କଥା ଓ ପ୍ରଥମ ଥର ପାଇଁ ଆମେ ଶୁଣିଲୁ ମାର୍କସ ଓ ଲେନିନ୍‌ଙ୍କ ନାମ । ସେ ଅନର୍ଗଳ କହି ଚାଲିଥିଲେ ଏହି ନିଷ୍ପେଷିତ ନିର୍ଯ୍ୟାତିତ ମଣିଷ କଥା । ଆପଣ ଟିକିଏ ଭାବନ୍ତୁ, ମାରନେବେ ମହାପାତ୍ରେ, ଚାହିଁଥିବେ ଜନତା । ଏ ସୁବିଧାବାଦ ଆଉ କେତେ ଦିନ ଚାଲିବ ? ଆମେ ସବୁ ମନ ମୁଗ୍ଧ ହୋଇ ଶୁଣୁଥିଲୁ । ମୋର ମନେହେଲା ମୋ ଭିତରେ ଯେମିତି ଆଲୋକର ବର୍ତ୍ତିକାଟିଏ ଜଳି ଉଠିଲା । ସଭା ସରିଲା । ସେ ଥିଲା ଏକ ନିର୍ବାଚନ ସଭା । ୧୯୫୨ ସାଲ, ସ୍ୱାଧୀନ ଭାରତର ପ୍ରଥମ ନିର୍ବାଚନ । ସ୍ୱାଧୀନତା ନୂତନ ଆଲୋକ ଆଣିବ ବୋଲି ଲୋକେ ବହୁତ ଆଶା କରିଥିଲେ । କିନ୍ତୁ ଗୋରା ସାହେବମାନେ ଦେଶ ଛାଡ଼ି ଗଲାପରେ କଳା ସାହେବ ସାଜି ଯେଉଁ ଭ୍ରଷ୍ଟାଚାର ସାମ୍ରାଜ୍ୟ ଗଠନ କଲେ ଝଦଡ଼ ଧାଗ୍ରା ଶଠ ବୃନ୍ଦ, ତାର ଚେତାବନୀ ଦେଇଥିଲେ ସେହି ନିର୍ବାଚନ ପ୍ରାର୍ଥୀ ସଦାନନ୍ଦ ମହାନ୍ତି । ମୋ ଉପରେ ତାଙ୍କ ବ୍ୟକ୍ତିତ୍ୱର ପ୍ରଭାବ ଏବେ ଯାଏଁ ବି ରହିଆସିଛି । ସ୍କୁଲ ଛାଡ଼ିଲା ପରେ ଖଲ୍ଲିକୋଟ କଲେଜରେ ପାଠ ପଢ଼ିବା ବେଳେ ମୁଁ ଷ୍ଟୁଡେଣ୍ଟ ଫେଡେରେସନ୍‌ର ଗଞ୍ଜାମ ଜିଲ୍ଲାର ଅନ୍ୟତମ ସମ୍ପାଦକ ରୂପେ କାର୍ଯ୍ୟ ତୁଲାଇଲି । ଅନ୍ୟ ସମ୍ପାଦକଟି ଥିଲେ ବିପ୍ଳବୀ ସ୍ୱର୍ଗତ ଗୋବିନ୍ଦ ପ୍ରଧାନଙ୍କ ପୁଅ ଗୌର ପ୍ରଧାନ । ଷ୍ଟୁଡେଣ୍ଟ ଫେଡେରେସନ ସଂକ୍ରାନ୍ତରେ ବହୁବାର ମୁଁ ସଦାନନ୍ଦ ମହାନ୍ତିଙ୍କ ସହ ମିଶିଛି । ତାଙ୍କର ହସ ହସ ମୁହଁ, ରେକ୍ ଠୋକ୍ କଥା ସତରେ ଏଇ ଯୁଗରେ ବିରଳ । ତାଙ୍କର ପ୍ରେରଣାରେ ମାର୍କସଙ୍କ ଡାସ କ୍ୟାପିଟାଲ୍, ଲେନିନ୍‌ଙ୍କ ବହୁ ଲେଖା ମୁଁ ପଢ଼ିଲି । ବ୍ରେଚମିନ୍, ମାଉସେତୁମ୍, ମାଇକୋଭସ୍କିଙ୍କ କବିତା ଓ ଗର୍କି, ଡଷ୍ଟୋଏଭସ୍କି ଓ ଟଲଷ୍ଟୟଙ୍କ କାହାଣୀ ଓ ଉପନ୍ୟାସରେ ନିର୍ଯ୍ୟାତିତ ମଣିଷ ପ୍ରତି ସମ୍ବେଦନା ମତେ ଅଭିଭୂତ କରିଛି ।

ତା ପରେ ଆସିକାରେ ଓକିଲାତି କଲାବେଳେ ମୋର ଅଗ୍ରଜ ଦୁଃଖୀକୃଷ୍ଣ ପଣ୍ଡାଙ୍କ ସହ ବହୁ ଗ୍ରାମ ବୁଲି ଅବହେଳିତ ମଣିଷର ଦୁଃଖ ଦୁର୍ଦ୍ଦଶା ମୁଁ ଦେଖିଛି । ଆସିକା ହେଉଛି କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରାଣକେନ୍ଦ୍ର । ତେଣୁ ସଦାନନ୍ଦ ମହାନ୍ତିଙ୍କୁ ଆସିକାରେ ବହୁବାର ମିଶିଛି । ଯେତେବେଳେ ମୁଁ ତାଙ୍କୁ ଦେଖେ ସେ ହସି ହସି "କିରେ ! ଆଉ ସବୁ ଭଲ ତ ?" କହି ଗଭୀର ସ୍ନେହରେ ମୋର ପିଠିରେ ହାତ ମାରିଦିଅନ୍ତି । ସେହି ଟିକିକ ସ୍ପର୍ଶ ମତେ କି ଆନନ୍ଦ ଦିଏ ଓ ମୋ ଭିତରେ ପ୍ରାଣ ପ୍ରାଚୁର୍ଯ୍ୟ ଭରିଦିଏ, ତାହା ମୁଁ ହିଁ ଜାଣେ ।

ବ୍ରହ୍ମପୁରକୁ ମୁଁ କାର୍ଯ୍ୟସ୍ଥଳ ରୂପେ ବାଛିନେବା ପରେ ବି ସଦାନନ୍ଦ ବାବୁଙ୍କ ସହ ମୋର ଘନିଷ୍ଠ ସମ୍ପର୍କ ରହିଥିଲା । ମୁଁ ସୋଭିଏତ୍ ନେହେରୁ ପୁରସ୍କାର ପାଇବା ପରେ ସେ ମତେ ଆନନ୍ଦରେ କୋଳାଗ୍ରତ କରି 'ସାବାସ୍ ବେଟା' କହିଲେ, କି ବଳିଷ୍ଠ ବ୍ୟକ୍ତିତ୍ୱ ତାଙ୍କର । ଦୁର୍ନୀତି ଗ୍ରସ୍ତ ଅଫିସର ଓ ମନ୍ତ୍ରୀ ତାଙ୍କୁ ଦେଖିଲାକ୍ଷଣି ଭୟରେ ଥରୁଥିଲେ । ସେ ସମସ୍ତ ଦୁର୍ନୀତିର ପ୍ରତିବାଦ କରୁଥିଲେ ସବୁବେଳେ । ଗରିବ ଜନସାଧାରଣଙ୍କର ସେ ଥିଲେ ସଖା ଓ ପ୍ରିୟତମ ।

ଦିନେ ମେଡିକାଲ କଲେଜରେ ଗାଁର ସାତ ଆଠ ଜଣ ରୋଗୀଙ୍କୁ ନେଇ ସେ ହଠାତ୍ ଝଡ଼ପରି ପହଞ୍ଚିଥିଲେ । ମେଡ଼ିକାଲ୍‌ର ଜଣେ ବଡ଼ ଡାକ୍ତର ବ୍ଲଡ୍ ପ୍ରେସର ପରୀକ୍ଷା ବକ୍‌ସଟେ ଧରି ତାଙ୍କୁ ପରୀକ୍ଷା କରିବା ପାଇଁ ଦୌଡ଼ି ଆସିଲେ । ସେ ହସି ହସି କହିଲେ 'ମତେ ନାହିଁ' ଏଇ ଗାଁର ଲୋକଗୁଡ଼ାକୁ ଟିକିଏ ପରୀକ୍ଷା କର । ସେହି ଡାକ୍ତର ଜଣକ ପ୍ରତ୍ୟେକ ରୋଗୀକୁ ଅତି ସାବଧାନତା ସହ ପରୀକ୍ଷା

କଲେ, କାରଣ ସଦାନନ୍ଦ ମହାନ୍ତି ସେଠି ଉପସ୍ଥିତ ଥିଲେ । ନରୁବା ସେ ଅର୍ଥ ଲୋଭୀ ଡାକ୍ତର ଆଉ ଅଫିସରେ ବ ସେହି ଟାଉଟ ଲୋକମାନଙ୍କୁ ସୁହିଁ ନ ଆନ୍ତେ । ତେଣୁ ମୋ ପାଇଁ ସେ ଥିଲେ ମାନବିକତାର ମୂର୍ତ୍ତିମନ୍ତ ପ୍ରତୀକ ।

ସଦାନନ୍ଦବାବୁ ଆଜି ଇହଧାମରେ ନାହାନ୍ତି ଏକଥା ସତ ହେଉନ । ତାଙ୍କର ଉଜ୍ଜ୍ୱଳ ବ୍ୟକ୍ତିତ୍ୱ, ବିମଳ ହୃଦବତ୍ତା ଚିର ସ୍ମରଣୀୟ ରହିବ । ଏହାହିଁ ସେହି ମହାନ୍ ବ୍ୟକ୍ତିତ୍ୱଙ୍କ ପ୍ରତି ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି । ମାନବିକ ସମ୍ବେଦନା ମାନବ ଅଧିକାର ପ୍ରବକ୍ତା ସଦାନନ୍ଦ ମହାନ୍ତିଙ୍କ ସ୍ୱପ୍ନ ଥିଲା ଏକ ଶୋଷଣ ମୁକ୍ତ ସମାଜ । ସେହି ସ୍ୱପ୍ନ କେବେ ସାକାର ହେବ ? ଅଗଣିତ ତମସା ଭିତରେ ସେ ଥିଲେ ଉଜ୍ଜ୍ୱଳ ତାରକା । ସେହି ତାରକା ଏବେ ବି ଜଳୁଛି ଗରିବ ଜନସାଧାରଣ, ଅସଂଖ୍ୟ ବନ୍ଧୁ ଓ ଅନୁଗାମୀଙ୍କ ମାନସ ଆକାଶରେ । ସଦାନନ୍ଦ ମୃତ୍ୟୁପରେ ବି ମହାନ୍ । ସେ ଅମର, ଅପରାଜିତ, ଜୀବନର ସ୍ରଷ୍ଟାକାର, କର୍ମଯୋଗୀ ସଦାନନ୍ଦଙ୍କର ଆଦର୍ଶ, ମାନବିକ ସଂବେଦନା, ମାନବିକ ମୂଲ୍ୟବୋଧ ଆମକୁ ଉଦ୍‌ବୁଦ୍ଧ କରୁ, ଏହା ହିଁ ଆମର କାମ୍ୟ ।

**ଲକ୍ଷ୍ମୀ ନାରାୟଣ ମହାପାତ୍ର**
ଗିରିରୋଡ୍, ବ୍ରହ୍ମପୁର-୭୬୦ ୦୦୫

# ଶେଷ ଦର୍ଶନ—ଚିର ସ୍ମରଣୀୟ

ଏହି ମାସ ୧୬ ତାରିଖ । ଉପ-ନିର୍ବାଚନ ପାଇଁ ଦେଶର ବିଭିନ୍ନ ପ୍ରାନ୍ତରେ ଭୋଟ ସରିଛି । ଭଣ୍ଡାରିପୋଖରୀରୁ ନିର୍ବାଚନ ଦାୟିତ୍ୱ ସାରି ସାଥୀ ପ୍ରକାଶ ଓ ମୁଁ ଫେରୁଛୁ । ଭୁବନେଶ୍ୱର ମାଷ୍ଟର-କେଣ୍ଟିନ୍ ନିକଟରେ ବସ୍ ଲାଗିଲାବେଳକୁ ପ୍ରାୟ ରାତି ୯-୩୦ । ଉଭୟେ କଥା ହେଲୁ ରାତି ବ୍ରହ୍ମପୁର ଚାଲିଯିବୁ ନା ଭଗବତୀ ଭବନରେ ରହିବୁ । ମୋର ମନେ ପଡ଼ିଗଲା, ଦୁଇଦିନ ତଳେ ସାଥୀ ପ୍ରବୀର ପାଲିତ ନିର୍ବାଚନ କାମରେ ଆସି ଭଣ୍ଡାରିପୋଖରୀ ଠାରେ ଆମକୁ ଜଣାଇଥିଲେ ସଦାନନ୍ଦ ବାବୁଙ୍କ ସ୍ୱାସ୍ଥ୍ୟ ଭଲ ନାହିଁ, ସେ ରାଜଧାନୀ ହସ୍‌ପିଟାଲ୍‌ରେ ଭର୍ତ୍ତି ହୋଇଛନ୍ତି । ତେଣୁ ଭୁବନେଶ୍ୱର ରାଜ୍ୟ ଅଫିସରେ ରାତି ରହି ଅନ୍ତତଃ ସଦାନନ୍ଦ ବାବୁଙ୍କ ସ୍ୱାସ୍ଥ୍ୟ ସମ୍ପର୍କରେ ଖବର ନେଇ ସକାଳୁ ବ୍ରହ୍ମପୁର ଫେରିବା । ସେଇଠାରେ ହିଁ ଓହ୍ଲାଇ ଚାଲିଲୁ ଭଗବତୀ ଭବନ । ଭଗବତୀ ଭବନ କୋଳାହଳ ଶୂନ୍ୟ ଉପର ମହଲାରୁ ଫୋନ୍ କରୁଥାନ୍ତି ରଞ୍ଜନ ଭଞ୍ଜ... ନନ୍ଦବାବୁ, ଆଶିଷବାବୁ, ପ୍ରଫୁଲ୍ଲବାବୁ ଗାଡ଼ିଧରି ସଦାନନ୍ଦବାବୁଙ୍କ ଘରକୁ ଯାଇଛନ୍ତି । ଏକଥା ଶୁଣିଲାପରେ ମନରେ ଆନନ୍ଦ ଜନ୍ମିଲା । ମୁଁ ଧରିନେଲି ସଦାନନ୍ଦବାବୁ ଭଲ ହୋଇ ଘରକୁ ଫେରିଲେ । ଏ ପ୍ରକାର ବିଶ୍ୱାସ ନେଇ ଉପର ମହଲାକୁ ପ୍ରକାଶ ଆ ମୁଁ ଉଠି ପଚାରିଲି, ଲୋକନାଥବାବୁ କାହାନ୍ତି ? ଉତ୍ତର ପାଇଲୁ ଆମେ ପରା ଲୋକନାଥବାବୁଙ୍କୁ ସଂଧ୍ୟା ୬ ଘଣ୍ଟାରେ ଏରୋଡ୍ରମ୍‌ରେ ଛାଡ଼ି ଆସିଲୁ, ସେ ଏ ଖବର ପାଇନାହାନ୍ତି । ମୋର ଦ୍ୱିତୀୟ ପ୍ରଶ୍ନ ଥିଲା କେଉଁ ଖବର ? ଜାଣିନାହାନ୍ତି, ସଦାନନ୍ଦବାବୁ ଆଜି ସଂଧ୍ୟା ଘ ୬-୩୦ ମି ଚାଲିଗଲେ । ଏହି ଦୁଃଖଦାୟକ ସମ୍ବାଦ ଶୁଣିଲାପରେ ମନରେ କୋହ ସୃଷ୍ଟି ହେଲା, କିନ୍ତୁ ସମସ୍ତ ସେଠାରେ ବସି ରହିଲି, ତା ପରେ ପରେ ସାଇକେଲ ଖଣ୍ଡେ ଧରି ଛୁଟିଲି ବାଣୀବିହାର ନିକଟସ୍ଥ ସଦାନନ୍ଦବାବୁଙ୍କ ବାସଭବନକୁ । ଦେଖିଲି ସଦାନନ୍ଦ ବାବୁ କ୍ଳାନ୍ତ ସୈନିକ ପରି ଶୋଇ ରହିଛନ୍ତି, ନିକଟରେ ମ୍ରିୟମାଣ ହୋଇ ବସିଛନ୍ତି ସାଥୀ ଆଶୀଷ ମହାପାତ୍ର, ନନ୍ଦ ପଟ୍ଟନାୟକ, ପର୍ଶୁରାମ ପଣ୍ଡା ଏବଂ ଅନେକ ସଦାନନ୍ଦ ବାବୁଙ୍କ ଦରଦୀ ବନ୍ଧୁ, ବାନ୍ଧବ ଓ ପରିବାର ବର୍ଗ । କାହାରି ମୁହଁରେ ଭାଷା ନାହିଁ । ମାନସିକ ଭାବେ କେହି ପ୍ରସ୍ତୁତ ନଥିଲେ ଯେ ସଂଗ୍ରାମୀ ସଦାନନ୍ଦ ବାବୁ ମୃତ୍ୟୁ ସହ ସଂଗ୍ରାମ କରି ହାରିଯିବେ, କାରଣ ସେ ବହୁବାର ମୃତ୍ୟୁ ସହ ସଂଗ୍ରାମ କରି ବିଜୟୀ ହୋଇଛନ୍ତି । କିନ୍ତୁ ଏହି ପରାଜୟ ଥିଲା ଏକ ଆକସ୍ମିକ । ମନେପଡ଼େ ଗତ ମାସ ୧୬ ତାରିଖ ( ଯେଉଁ ଦିନଟି ଥିଲା ସଦାନନ୍ଦ ବାବୁଙ୍କୁ ମୋର ଶେଷ ଦର୍ଶନ ) ସେଦିନ ପାର୍ଟିର ଜିଲ୍ଲା କାର୍ଯ୍ୟକାରୀ କମିଟିର ବୈଠକ ଚନ୍ଦ୍ରପାଣି ଠାରେ ଅନୁଷ୍ଠିତ ହେଉଥାଏ । ରାଜ୍ୟରୁ ଆସିଥାନ୍ତି ସାଥୀ ସଦାନନ୍ଦ ମହାନ୍ତି, ସାଥୀ ପ୍ରବୀର ପାଲିତ, ସାଥୀ ନନ୍ଦ ପଟ୍ଟନାୟକ, ସାଥୀ ଦ୍ୟୁତିକୃଷ୍ଣ ପଣ୍ଡା, ସାଥୀ ଆଶୀଷ ମହାପାତ୍ର, ସାଥୀ ପିତାମ୍ବର ପଣ୍ଡା । ଜିଲ୍ଲାର ଅନେକ ସାଂଗଠନିକ ବିଷୟ ମଧ୍ୟରେ ମୁଖ୍ୟ ବିଷୟ ଥିଲା ଆସ୍କା ଠାରେ ପାର୍ଟିର ରାଜ୍ୟ ସମ୍ମିଳନୀ କିପରି ସଫଳତାର ସହ ଅନୁଷ୍ଠିତ କରାଯିବ । ସମସ୍ତ ଆଲୋଚନା ମଧ୍ୟରେ ସଦାନନ୍ଦ ବାବୁଙ୍କ ଆଲୋଚନା ଏକ ଉଚ୍ଚକୋଟିର ଥିଲା । ସେ ଚାକଚକ୍ୟ ଓ ଆଡ଼ମ୍ବର ପୂର୍ଣ୍ଣ ସମ୍ମିଳନୀର ବିରୋଧ କରି ଅତୀତ ଇତିହାସକୁ ମନେପକାଇ ଦେଇଥିଲେ । ସାଥୀ ଭଗବତୀ ପାଣିଗ୍ରାହୀ ବନ୍ୟା ପ୍ରପୀଡ଼ିତ ଲୋକଙ୍କ ସେବା କରି କମ୍ୟୁନିଷ୍ଟ ପାର୍ଟି ଗଢ଼ିଥିଲେ । ସାଥୀ ଗୋବିନ୍ଦ ପ୍ରଧାନ ବିଶାଳ କୃଷକ ସମାବେଶ ଅନୁଷ୍ଠିତ କରାଇ କମ୍ୟୁନିଷ୍ଟ ପାର୍ଟି ଗଢ଼ିଥିଲେ ।

ଲୋକଙ୍କ ସେବା ଓ ଲୋକଙ୍କ ସହ ସମ୍ପର୍କ ହିଁ କମ୍ୟୁନିଷ୍ଟ ପାର୍ଟିର ସଂଗଠନ । ଗଞ୍ଜାମ ଜିଲ୍ଲାରେ ଯେପରି ଭୟଙ୍କର ବନ୍ୟା ହେଲା ଏବଂ ସମଗ୍ର ଜିଲ୍ଲା ପାର୍ଟି ଯେଉଁଭଳି ଭାବେ ଲୋକଙ୍କ ନିକଟରେ ଠିଆହେଲା, ଲୋକେ କଣ ଏତେ ଚଞ୍ଚଳ ଆମକୁ ଭୁଲିଯିବେ ? ଏହା ଥିଲା ତାଙ୍କର ଜନସାଧାରଣଙ୍କ ପ୍ରତି ବିଶ୍ୱାସ । ସେ ତତ୍ତ୍ୱଗତ ବିଷୟର ଜଟିଳତାକୁ ଏଡ଼ାଇଦେଇ ତତ୍ତ୍ୱର ବ୍ୟାବହାରିକ ଦିଗ ପ୍ରତି ହିଁ ସବୁବେଳେ ଗୁରୁତ୍ୱ ଆରୋପ କରନ୍ତି । ପାର୍ଟିର ଅନେକ ସଂକଟ ସମୟରେ ବିଭିନ୍ନ ରାଜନୈତିକ ଓ ସାଂଗଠନିକ ପ୍ରଶ୍ନ ଉପରେ ତାଙ୍କର ମତାମତ ଓ ଆଲୋଚନା ଅତ୍ୟନ୍ତ ଜନବାଦୀ ଓ ବାସ୍ତବମୁଖୀ ଥିଲା । ସେ ସାଧାରଣ ଲୋକଙ୍କ ସେବା କରି ଯେତେ ଆନନ୍ଦ ପାଇ ସେ ନିଜ ନାମର ଯଥାର୍ଥତା ପ୍ରତିପାଦନ କରିଛନ୍ତି । ଏଥି ପାଇଁ ସେ ପ୍ରାୟ ଅର୍ଦ୍ଧ ଶତାବ୍ଦୀ କାଳ ଲଢ଼ିଛନ୍ତି, ସଂଗ୍ରାମ କରିଛନ୍ତି । କ୍ଷତ, ବିକ୍ଷତ ହୋଇଛନ୍ତି, ଚରମ ଦୁର୍ଦ୍ଦିନରେ କାଳାତିପାତ କରିଛନ୍ତି, ବହୁ ନିର୍ଯ୍ୟାତନା ଭୋଗିଛନ୍ତି । ଲଠି ମାଡ଼ ଖାଇ କାରାଗାରର ଅନ୍ଧାର କୋଠରୀ ଭିତରେ ସଢ଼ିଛନ୍ତି କିନ୍ତୁ କେବେ ନିଜର ଧୈର୍ଯ୍ୟ ହରାଇ ନାହାନ୍ତି । ସେ ସବୁବେଳେ ନିର୍ଭୀକ । ବିପଦ ସମୟରେ ଲୋକଙ୍କୁ ଓ ପାର୍ଟିର କର୍ମୀଙ୍କୁ ସାହାସ ଦେବାପାଇଁ ସେ ଆସିଯାଆନ୍ତି । ଖାତିର ନଥାଏ ତାଙ୍କର ଭଗ୍ନ ସ୍ୱାସ୍ଥ୍ୟପ୍ରତି । ତପ୍ତପାଣିରୁ ସେହି ଦିନ ଫେରିଲା ବେଳେ ତାଙ୍କ ସହ କାର୍‌ରେ ଲୋକନାଥ ବାବୁ, ଆଶିଷ ବାବୁ, ନିଲୁ ବାବୁ ଓ ମୁଁ ଥାଉ । ଫେରିବା ବାଟରେ ସେ ହରିଣା ଗ୍ରାମକୁ ଆମକୁ ଧରିଗଲେ । ଲୋକଙ୍କ ସହ ଗାଁର ସମସ୍ୟା ନେଇ ଆଲୋଚନା କଲାପରେ ଗାଁ ଲୋକେ ରାଜ୍ୟ ସମ୍ମିଳନୀ ପାଇଁ ଏକ ଓଳି ଖାଇବାକୁ ଦେବେ-ବୋଲି ପ୍ରତିଶ୍ରୁତି ଦେଲେ । ରାଜ୍ୟସମ୍ମିଳନୀ ପାଇଁ କିଛି ଦିନ ଜିଲ୍ଲାରେ ସମୟ ଦେବା ପାଇଁ । ଉତ୍ତରରେ ସଦାନନ୍ଦ ବାବୁ କହିଲେ ବଞ୍ଚି ଥିଲେ ନିଶ୍ଚିତ ସମୟ ଦେବି । ଏହା ଥିଲା ଆମ ମାନଙ୍କ ପାଇଁ ଥଟ୍ଟା ପରିହାସ କିନ୍ତୁ ସ୍ପଷ୍ଟବାଦୀ ସଦାନନ୍ଦବାବୁଙ୍କ ପାଇଁ ଥିଲା ବାସ୍ତବତା । ସେହିଦିନର ସମସ୍ତ ଘଟଣା ଆଜି ଆଖି ଆଗରେ ନାଚି ଯାଉଛି । ମନରେ ଦାରୁଣ ଦୁଃଖ ଜାତ ହେଉଛି । କାନ୍ଦ ମାଡ଼ୁଛି । ସାଥି ସଦାନନ୍ଦ ବାବୁଙ୍କ ପରିବାର ସିନା ଘରର ମୁରବୀ ହରାଇଲେ କିନ୍ତୁ ଓଡ଼ିଶାର କୃଷୀ, ମୂଲିଆ, ମେହନତି ମଣିଷ ତାର ଜଣେ ଆପୋଷ ବିହୀନ ସଂଗ୍ରାମୀ ସାଥୀକୁ, ଜଣେ ରାଜନୈତିକ ପରାମର୍ଶଦାତାକୁ, ଜଣେ ଦରଦୀବନ୍ଧୁକୁ, ଜଣେ ସ୍ପର୍ଶକାତର ଆବେଗପୂର୍ଣ୍ଣ ଭାବ ପ୍ରବଣ ମଣିଷକୁ, ଜଣେ ଦକ୍ଷ ବକ୍ତାକୁ, ଜଣେ ଚରମ ଆଶାବାଦୀ ବିପ୍ଳବୀକୁ ଚିରଦିନ ପାଇଁ ହରାଇଲେ ।

ସେହି ସଂଗ୍ରାମୀ ସାଥି ସଦାନନ୍ଦ ମହାନ୍ତିଙ୍କୁ ମୁଁ ଲୋତକପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଜଣାଇ ତାଙ୍କର ଆଦର୍ଶ, ତ୍ୟାଗ ଓ ଉତ୍ସର୍ଗୀକୃତ ଜୀବନ ଆଗାମୀ କାଲିର ଜନ ଆନ୍ଦୋଳନର ପ୍ରେରଣାର ଉତ୍ସ ହେଉ — ଏହା ହିଁ ଆଜିର କାମ୍ୟ ।

**ଏନ୍. ନାରାୟଣା ରେଡ୍ଡି**
ଚମାଖଣ୍ଡି

●

# ଶୋକବାର୍ତ୍ତା

ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ଜଣେ ମହାରଥୀ ସଦାନନ୍ଦ ମହାନ୍ତିଙ୍କ ତିରୋଧାନରେ ଦେଶର ତଥା ଓଡ଼ିଶାର ରାଜନୈତିକ କ୍ଷେତ୍ରରେ ଯେଉଁ ମହାନ୍ କ୍ଷତି ହେଲା ତାହା ସର୍ବଦା ଅପୂରଣୀୟ ରହିବ । ମୁଁ ତାଙ୍କ ଆତ୍ମାର ସଦ୍‌ଗତି କାମନା କରୁଛି ଏବଂ ଦଳର ସଂଗ୍ରାମୀ କର୍ମୀମାନେ ହତୋତ୍ସାହ ନ ହୋଇ ତାଙ୍କ ଦର୍ଶିତ ପଥରେ ଆଗେଇ ଚାଲିବେ ବୋଲି ମୋର ଆଶା ।

**କ. ହରେକୃଷ୍ଣ ପାଣିଗ୍ରାହୀ**
ବ୍ରହ୍ମପୁର, ଗାନ୍ଧିନଗର

●

# ପ୍ରତିଧ୍ୱନି

ପଥ ପ୍ରାନ୍ତେ ଶବାଧାର, ଦଳିତର ଶେଷ ଜ୍ୟୋତି ଶିଖା
ମଶିଣାରେ ସଦ୍ୟଭିଜା ପ୍ରସ୍ତୁତ
ତଥାପି ପଡ଼ିଅଛି ଭୂଇଁପରେ ମୃଦୁ ମୃତ୍ୟୁ ଲିଭି ନାହିଁ ରେଖା
ଏହି ନୁହ ମଶବାର, କାଳ ପାଶେ ଯାଇଅଛି ଜିତି ।

କନ୍ଧମାଳ କାଦୁଅର ସମର୍ପିତ ପୁଞ୍ଜ
ରକ୍ତର ମେରୁଦଣ୍ଡେ ଭେଦିଥିଲା ଅଭିନବ ଗ୍ରନ୍ଥି,
ନୂଆଁ ଏକ ପୃଥିବୀର ଯା କଳ୍ପନା ଚଞ୍ଚ
ଶବାଧାରେ ବାକ୍ୟ ଶୂନ୍ୟ, ଉଡ଼ିଅଛି ମୁକ୍ତିଯାତ୍ରୀ ବାୟୁ !
ବାରୁଦର କାବ୍ୟମାଳା, ଅଗ୍ନିଗର୍ଭା ସଙ୍ଗ୍ରାମ ସାଥୀ
ଝଡ଼ ପଥେ କ୍ଷତଦସ୍ତ ନୂଆ ସେନାପତି
ବିପ୍ଲବର ସିନ୍ଦୂର ଧ୍ୱଜା ମେଲି ବୀର ମିଳାଇଲା ଗୀତ
ବୃଦ୍ଧଙ୍କର ରଣଧ୍ୱନି ଟାଳିଗଲା ମାତି
ଅମରକେ ରୁଦ୍ଧେ ବନ୍ଦେ ପ୍ରତିଧ୍ୱନି ଶୁଭିଅଛି କାହିଁ
ପ୍ରାଣତନ୍ତ୍ରୀ ଫୁଟେ ତେବେ ଆସେ ଶଙ୍କା ଶତ
ମଣିଷର ଯାତ୍ରା ଯେବେ ସଙ୍ଗ୍ରାମ ପାଇଁ
ପରିଜନଙ୍କୁ ଯାତ୍ରୀନୁହଁ, ମାନସର ପ୍ରଶ୍ନବାଚୀ ମୃତ ।

ପଡ଼ିଅଛି ପୁଷ୍ପଶଯ୍ୟା, ବୀରପୁଞ୍ଜ ପଡ଼ିଅଛି ଶୋଇ,
ବହୁଅଛି ପ୍ରତିହୃଦେ ବିପ୍ଳବର ସ୍ରୋତ ଝର ଝର
ଆଗାମୀର ବାର୍ତ୍ତା କଣ୍ଠରେ ପ୍ରତି ପ୍ରାଣେ ସ୍ୱର ଆଙ୍କି ଦେଇ
ସାମ୍ୟବାଦୀ ନାୟକର ଚିରନ୍ତନ ଦୀପଶିଖା ଜଳି ।

ଶ୍ମଶାନର ପଦଧ୍ୱନି ନିମିଷକେ ପାଲଟିଲା କ୍ଷୀଣ
ଚିତାପରେ ସେନାପତି ଉର୍ଦ୍ଧ୍ୱ ଆକାଶେ
ଚାଲିଗଲା ବୀରପୁଞ୍ଜ, ଅସରନ୍ତି ପୁଣି ଯାର ଜନ୍ମ
ମୁକ୍ତିଯାତ୍ରୀ-ହେ ବନ୍ଦାସ୍ତି ! ପ୍ରତିଧ୍ୱନି କେତେ ଇତିହାସେ ।

**ବିନୋଦ ମହାରଣା**
ପାର୍କସାହି
ବ୍ରହ୍ମପୁର-୭୬୦୦୦୧

# ସ୍ୱର୍ଗତ କ. ସଦାନନ୍ଦ ମହାନ୍ତିଙ୍କ ଆତ୍ମାପ୍ରତି ଶ୍ରଦ୍ଧାଞ୍ଜଳୀ

ମହାନ୍ତିବାବୁ ଆଜି ନାହାନ୍ତି, କିନ୍ତୁ ତାଙ୍କର ସ୍ମୃତି ଅମର ହୋଇ ରହିଛି ଏବଂ ରହିବ । ଦୁନିଆଁ ଟା ଗୋଟାଏ ରଙ୍ଗମଞ୍ଚ । ଆମେ ସଭିଏଁ ଜଣେ ଜଣେ ଅଭିନେତା ଏବଂ ଅଭିନେତ୍ରୀ । ଜନ୍ମ ନେଇଛେ ଯେତେବେଳେ ଅଭିନୟ ନିଶ୍ଚିତଭାବେ କରିବାକୁ ପଡ଼ିବ, କିନ୍ତୁ ଏମିତି ଅଭିନୟ କରିବା ଯାହାଦ୍ୱାରା ଅନନ୍ତ ପୁରସ୍କାର ପାଇବା ।

ସତରେ ସାଥୀ ମହାନ୍ତିବାବୁ, ଆପଣ ପ୍ରକୃତରେ ଥିଲେ ଜଣେ ମହାନ୍ କର୍ମନିଷ୍ଠ । ଦେଶପାଇଁ, ଜାତିପାଇଁ ନିଜସ୍ୱ ଜଳାଞ୍ଜଳୀ ଦେଇ ବହୁବାର ଜେଲ ଯାଇଥିଲେ, ବହୁ ଲାଠିଚାଳନା ଖାଇ ମଧ୍ୟ ଆପଣଙ୍କର ପ୍ରେମସ୍ପଦମାନଙ୍କୁ ଦୁର୍ବଳ କରିନଥିଲେ । ସମାଜବାଦ ଲକ୍ଷ୍ୟ ଥାଇ ସର୍ଦ୍ଦାରବାବୁ, ପ୍ରଧାନବାବୁ, ମହାପାତ୍ରବାବୁ ଓ ଆଚାର୍ଯ୍ୟ-ବାବୁ ଚାଲିଯାଇଛନ୍ତି । ଆପଣ ଠିକ୍ ସେହିଭଳି ଚାଲିଗଲେ । ମୁଁ ମଧ୍ୟ ଆପଣମାନଙ୍କର ପଶ୍ଚାତ୍ ଅନୁସରଣ କରିବାକୁ ଯାଉଛି ।

ଜୀବନରେ ଜନ୍ମ ମୃତ୍ୟୁର ଇତିହାସ ନଥାଏ, ଥାଏ ସ୍ମୃତିର ! ମୁଁ ଆଶା କରେ ମହାନ୍ତିବାବୁ, ଆପଣଙ୍କର ସ୍ମୃତି ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଖୋଦିତ ହୋଇ ରହୁ । ସମାଜବାଦର ଦାୟିତ୍ୱ କର୍ମନିଷ୍ଠ ଯୁବ କମ୍ରେଡ୍‌ମାନଙ୍କୁ ଦେଇ ଆମେମାନେ ଚିରନିଦ୍ରା ଯିବାପାଇଁ ଚାହୁଁଛୁ । ଆପଣଙ୍କର ସ୍ମୃତି ଉପରେ ପୁଷ୍ପବୃଷ୍ଟି କରିଲେ ଆମେମାନେ ଖୁବ୍ ଶାନ୍ତି ପାଇବୁ ।

ଆଜି ମୋର ଯୁବ କମ୍ରେଡ୍‌ମାନଙ୍କୁ ଏତିକି ଅନୁରୋଧ ଆମର ପୂର୍ବ ସାଥୀଭାଇମାନେ ଯେଉଁଭଳି ଆଦର୍ଶର ସହିତ କର୍ମ କରି ଆମ ଦେଶର ଏବଂ ପାର୍ଟିର ଇଜ୍ଜତ ରଖିଛନ୍ତି, ଠିକ୍ ସେହିଭଳି ଆପଣମାନେ କର୍ମ କରିଲେ ଦେଶର, ଜାତିର ତଥା ପାର୍ଟିର ମଙ୍ଗଳ ହେବ । ଭଗବାନଙ୍କ ନିକଟରେ ମୋର ଏତିକି ମିନତି, ୯ ମହାନ୍ତିବାବୁ ପୃଥିବୀରେ ଜନ୍ମନେଇ ସମାଜବାଦ ଲକ୍ଷ୍ୟକୁ ପୂର୍ଣ୍ଣ କରିବେ ।

**କବଳକ ଶ୍ରୀ ଗୋକୁଳ ଚନ୍ଦ୍ର ରଣା**
ବୈଦ୍ୟ ବାଚସ୍ପତି



# ମୋର ସାଥୀ ସଦାନନ୍ଦ

ପ୍ରିୟ ସାଥୀ ସଦାନନ୍ଦ !

ମୋର ମନେ ଅଛି, ତୁମ ସହ ସେଇ ମୋର ପ୍ରଥମ ସାକ୍ଷାତ ୧୯୪୩ ସାଲରେ । କମ୍ୟୁନିଷ୍ଟ ପାର୍ଟିର କର୍ମୀ ଭାବରେ କାର୍ଯ୍ୟ କରିବାର ଆମେ ଦୁହେଁ ଜୀବନର ଶେଷଯାଏଁ ଗୋଟିଏ ମତ, ଗୋଟିଏ ପଥରେ ଚାଲି ଆସିଥିଲେ । ଏଥି ମଧ୍ୟରେ ପାର୍ଟି କାର୍ଯ୍ୟରେ ନିଷ୍ଠାବାନ ସମାଲୋଚକ ହେବାରୁ କେତେକ ନେତୃ ସ୍ଥାନୀୟ ବ୍ୟକ୍ତିମାନଙ୍କର କୋପ ଦୃଷ୍ଟିର ମୁଁ ଶିକାର ହୋଇ ଦେଶର ଏବଂ ସମାଜର ସେବାରେ ଆଜଯାଏଁ ଲାଗିଆସିଛି । ମୋର ସାନ ଭାଇ ହିସାବରେ ତମପ୍ରତି ଏବଂ ତମ ପରିବାର ପ୍ରତି ସେଥିରେ ଥିବା ସ୍ନେହ ଅତୁଟନୀୟ । ସହକର୍ମୀ ଭାବରେ ତୁମେ ଓ ମୁଁ ଜନସାଧାରଣଙ୍କର ହିତ ପାଇଁ କ୍ଷମତା ବିହୀନ କର୍ମୀ ହିସାବରେ କାର୍ଯ୍ୟକରି ଆସୁଥିଲେ । ସେଥି ମଧ୍ୟରେ ତମେ ପାର୍ଟିର ଜିଲ୍ଲା ସମ୍ପାଦକ ଥିବା ବେଳେ ମୁଁ ମୋର ଜୀବିକା ନିର୍ବାହର କାର୍ଯ୍ୟକଳାପ ଛାଡ଼ି ପାର୍ଟିର ପୂରା ସମୟ କର୍ମୀ ହେବା ପାଇଁ ତୁମର ନିର୍ଦ୍ଦେଶ ପ୍ରକାରେ ପୂରା ସମୟ କର୍ମୀ ହେଲି । ଜିଲ୍ଲା କମିଟିର ସଭ୍ୟ ଓ ପ୍ରାଦେଶିକ କମିଟିର ସଭ୍ୟ ହେବା ସାଙ୍ଗକୁ ଆସିକା ତାଲୁକ କମ୍ୟୁନିଷ୍ଟ ପାର୍ଟିର ନିର୍ବାଚିତ ସଂପାଦକ ହେଲି । ସେହିଦିନ ଠାରୁ ବିଭିନ୍ନ ଆନ୍ଦୋଳନରେ ଉଭୟେ ମିଶି କାମ କରିଥିଲେ । ଉଭୟେ କଂଗ୍ରେସ ସରକାରଙ୍କ ଅମଳରେ କାରାବରଣ କରି ବ୍ରହ୍ମପୁର ଓ କୋରାପୁଟ ଜେଲରେ ରାଜବନ୍ଦୀ ରୂପେ ରହିଥିଲେ । ତମର ଅଜ୍ଞାତବାସ ବେଳେ ଗଞ୍ଜାମ ଜିଲ୍ଲାର ଆଳପୁର ଗ୍ରାମରେ ତମର ପରିବାରର ସମସ୍ତଙ୍କର ସାହାଯ୍ୟ ଓ ସହାନୁଭୂତି ମୁଁ ପାଇଥିଲି । ତାହା ମୋର ମାନସପଟରୁ ଲିଭିପାରେନା । ତମର ସ୍ନେହ, ମମତା ସେଥିପ୍ରତି ସବୁବେଳେ ଅତୁଟ ଥିଲା । ତମେ ଇହଧାମରୁ ନଭେମ୍ବର ୧୭ ତାରିଖ ସନ୍ଧ୍ୟାରେ ଶେଷ ନିଶ୍ୱାସ ତ୍ୟାଗ କରିବା ଶୁଣି ମୁଁ ଅବାକ ହେଲି । ଜନ୍ମ ମାତ୍ରେ ସମସ୍ତଙ୍କର ମୃତ୍ୟୁ ଅନିବାର୍ଯ୍ୟ, ଏହାହିଁ ସତ୍ୟ । ତମର ପରିବାରର ଦୁଃଖରେ ମୁଁ ସମଦୁଃଖୀ । ତମର ସ୍ମୃତି ମୋ ମନରେ ଚିର ଜାଗ୍ରତ

ଉଠିବ । ତମର ଅନାବିଳ ସ୍ନେହ ଓ ହସହସ ମୁହଁ ମୋ ଆଖି ଆଗରେ ନାଚ ଉଠୁଛି । ତୁମେ ଯେ ଆଜି ଏ ମର୍ତ୍ତ୍ୟଧାମରେ ନାହଁ, ମୁଁ ଭାବିପାରୁନି । ବିଦାୟ ସାଥୀ ! ବିଦାୟ ! ତୁମର ଅନାବିଳ ଆତ୍ମା ତ ସବୁବେଳେ ସମସ୍ତ ଝଡ, ଝଞ୍ଜା ଭିତରେ ଅନମନୀୟ ଥିଲା । ତୁମର ମୃତ୍ୟୁରେ ବି ତମ ସେବା, ନିଷ୍ଠା ତମକୁ ଅମର କରି ରଖିବ, ଏହା ମୋର ଦୃଢ଼ ବିଶ୍ୱାସ ।

**ଏମ୍ ଜଗନ୍ନାଥ ସ୍ୱାମୀ**
ଅସିକା



# ଦୃଷ୍ଟି ଭଙ୍ଗୀ

ଦେଶର ସାମ୍ପ୍ରତିକ ପରିସ୍ଥିତି ଅନୁଧ୍ୟାନକଲେ ଜଣାପଡ଼ିବ ଯେ, ବେକାରି ରାକ୍ଷସ ଏ ଦେଶକୁ ସମୂଳେ ଗ୍ରାସ କରିବାକୁ ବସିଲାଣି । କର୍ମ ଯୋଗାଣ ସଂସ୍ଥା ଦ୍ୱାରା ବେକାରି ସମ୍ପର୍କରେ ଯେଉଁ ସୂଚନା ଦିଆଯାଉଛି ବାସ୍ତବ କ୍ଷେତ୍ରରେ ତାହା ବହୁଗୁଣ ଅଧିକ । ବିଶେଷ କରି ଗାଁ ଗହଳର ବେକାର ଯୁବକ ମାନଙ୍କ ହିସାବ କୌଣସି ସଂସ୍ଥା ଦ୍ୱାରା ହିସାବ କରାଯାଇ ନଥାଏ କିମ୍ବା ସେମାନେ କର୍ମ ଯୋଗାଣ ସଂସ୍ଥାର ଦ୍ୱାରସ୍ଥ ହୋଇ ନଥାନ୍ତି । କିନ୍ତୁ ଏ ପ୍ରକାର ବେକାର ମନଙ୍କର ଉପ ମନ୍ତ୍ରୀ, ବିଧାୟକ ଓ ଲୋକସଭା ସଦସ୍ୟ ମାନଙ୍କ ଦୁଆରେ ଚାକିରି ଖଣ୍ଡିଏ ପାଇବାପାଇଁ ଗୁଡ଼ାକୁ ପିମ୍ପୁଡ଼ି ବେଢ଼ିଲାପରି ବେଢ଼ି ରହି ଥାଆନ୍ତି । ପରିସଂଖ୍ୟାନ ଠାରୁ ଏଭଳି ବେକାରଙ୍କ ସଂଖ୍ୟା କେତେ ଯେ ଅଧିକ ତାର ତୁଳନା ନାହିଁ । ଏ ସବୁର ନିରାକରଣ ପାଇଁ ଯୋଜନାର ଦୃଷ୍ଟି ଭଙ୍ଗୀ ବଦଳିବା ଦରକାର ଏବଂ ବର୍ତ୍ତମାନର ସରକାର ଏହାର ସମାଧାନ ପାଇଁ ନିଶ୍ଚିତ ଭାବେ ଦୃଷ୍ଟି ଦେବେ ଏ ଆଶା ଓ ବିଶ୍ୱାସ ରହିଛି ।

ଏ ଉତ୍କଟ ବେକାରି ସମସ୍ୟାର ସମାଧାନ ପାଇଁ କୃଷି ଭିତ୍ତିକ ଶିଳ୍ପର ଭୂମିକା ଯେ ମୁଖ୍ୟସ୍ଥାନ ଅଧିକାର କରିବ ଏଥିରେ ସନ୍ଦେହ ନାହିଁ । ଭାରତ ବର୍ଷ ବିଶେଷ କରି ଓଡ଼ିଶା ହେଉଛି କୃଷି ପ୍ରଧାନ ରାଜ୍ୟ । ଏଠାରେ ଶତକଡ଼ା ୭୦ ଭାଗ ଲୋକ କୃଷି ଉପରେ ନିର୍ଭର କରି ଚଳନ୍ତି । ତେଣୁ କୃଷି ଉପରେ ନିର୍ଭର କରି ଚଳୁଥିବା ଲୋକ ମାନଙ୍କୁ ଯଦି ତାଙ୍କର କର୍ମ ସ୍ଥଳରେ କର୍ମସଂସ୍ଥାନର ବ୍ୟବସ୍ଥା କରା ନଯାଏ ତାହେଲେ ସେଠାକାର ବେକାର ଯୁବକମାନେ ସହରାଭିମୁଖୀ ହେବାକୁ ବାଧ୍ୟହେବେ । କିନ୍ତୁ ଯଦି କୃଷିଭିତ୍ତିକ ଶିଳ୍ପ ଯଥା, ଚିନିଶିଳ୍ପ, ସୂତାକଳ, ବୟନ ଶିଳ୍ପ, ତେଲକଳ, ଧୂଆଁ ପତ୍ର ଭିତ୍ତିକ ସିଗାରେଟ୍ ଶିଳ୍ପ, ଝୋଟ କଳ ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ଶିଳ୍ପ ପ୍ରତିଷ୍ଠା କରାଗଲେ ଗ୍ରାମକୁ ଶିଳ୍ପକରଣ କରାଯାଇ ପାରିବା ସଙ୍ଗେ ସଙ୍ଗେ ଉଭୟ ଶିଳ୍ପ ଓ କୃଷି କ୍ଷେତ୍ରରେ ଶିକ୍ଷିତ ଓ ଅଶିକ୍ଷିତ ଲୋକଙ୍କୁ କର୍ମଯୋଗାଣ ଦିଆଯାଇ ପାରିବ । ଏହା କରିବାକୁ ଗଲାବେଳେ କୃଷି କ୍ଷେତ୍ରକୁ ପ୍ରାଧାନ୍ୟ ଦେବାକୁ ହେବ । କୃଷିର ଅଭିବୃଦ୍ଧି ଘଟାଇବାକୁ ହେଲେ ଜଳସେଚନର ସୁବନ୍ଦୋବସ୍ତ ଏକାନ୍ତ ଅପରିହାର୍ଯ୍ୟ । ଅନ୍ୟଦିଗରେ କୃଷିକୁ ଆଧୁନିକୀକରଣ କରାଇବାକୁ ହେବ । ମୋଟ ଉପରେ କୃଷି ଜଳସେଚନ ଓ କୃଷିଭିତ୍ତିକ ଶିଳ୍ପର ଅଭିବୃଦ୍ଧିପାଇଁ ସମଗ୍ର ଯୋଜନାର ଦୃଷ୍ଟି ଭଙ୍ଗୀ ବଦଳାଇବାକୁ ହେବ ଏବଂ ବ୍ୟୟ ଅଟକଳର ମୁଖ୍ୟଅଂଶ ଏ ଦିଗରେ ବିନିଯୋଗ କରିବାପାଇଁ ବ୍ୟବସ୍ଥା କରିବାକୁ ହେବ ।

ଏହା ସଙ୍ଗେ ସଙ୍ଗେ ବେକାରି ଦୂରୀକରଣ ପାଇଁ ଅନ୍ୟଦିଗଟି ଭୁଲିଗଲେ ଚଳିବ ନାହିଁ, ସେଇଟି ହେଉଛି ସମବର୍ଦ୍ଧିଷ୍ଣୁ ଜନସଂଖ୍ୟା । ଭାରତ ବର୍ଷରେ ଜନସଂଖ୍ୟା ଯେପରି ହୁ ହୁ ହୋଇ ବଢ଼ିଚାଲିଛି ତାକୁ ରୋକା ନ ଗଲେ ଯେତେ ଯାହା କଲେ ମଧ୍ୟ କୌଣସି ସମସ୍ୟାର ସମାଧାନ ହେବନାହିଁ । ତେଣୁ ଜନ୍ମ ନିୟନ୍ତ୍ରଣ ଉପରେ ଗୁରୁତ୍ୱ ଦେବାକୁ ହେବ । ଏ ଦିଗରେ ଗୋଟିଏ ଅଭିମତ ହେଉଛି ଯେ, ବନ୍ଧ୍ୟାକରଣ ପାଇଁ ଯେଉଁ ସାହାଯ୍ୟ ବର୍ତ୍ତମାନ ଦିଆଯାଉଛି ତାକୁ ବଢ଼ାଇବା ସଙ୍ଗେ ସଙ୍ଗେ ଅନ୍ୟ ସୁବିଧା ମାନ ଦେବାକୁ ହେବ । ଯେଉଁମାନେ ବନ୍ଧ୍ୟାକରଣ ଅସ୍ତ୍ରୋପଚାର କରିବେ ସେମାନଙ୍କୁ ରିହାତି ସହାୟ (ସବ୍‌ସିଡି) ଓ ଅଗ୍ରାଧିକାର ଭିତ୍ତିରେ ଋଣ ଦେବା ବ୍ୟବସ୍ଥା କରିବାକୁ ହେବ । ସେମାନଙ୍କ ପିଲାଙ୍କୁ ପାଠାକ୍ଷେତ୍ରରେ ଚାକିରି ଓ ପ୍ରମୋସନରେ ଅଗ୍ରାଧିକାର ପ୍ରଭୃତି ସୁବିଧା ମାନ ଦେବାକୁ ହେବ । ବର୍ତ୍ତମାନ ହରିଜନ, ଗିରିଜନ ମାନଙ୍କୁ ଯେଉଁ ସୁବିଧା ଦେଉଛନ୍ତି ସେ ସମସ୍ତ ପ୍ରକାର ସୁବିଧା —ସଂରକ୍ଷଣ ଭିତ୍ତିରେ ବନ୍ଧ୍ୟାକରଣ କରିବା ବ୍ୟକ୍ତିକୁ ଦେବାକୁ ହେବ । ଜନ୍ମ ନିୟନ୍ତ୍ରଣର ଆବଶ୍ୟକତା ସହରର ଲୋକେ ବିଶେଷକରି ଚାକିରି କ୍ଷେତ୍ରରେ ଯେଉଁମାନେ ଅଛନ୍ତି ପ୍ରାୟ ଅଧିକାଂଶ ଉପଲବ୍ଧି କରି ସାରିଲେଣି । ଗାଁ ଗହଳର ଦରିଦ୍ର ଅଶିକ୍ଷିତ ଲୋକେ ଏହାର ଉପାଦେୟତା ବୁଝିପାରି ନାହାନ୍ତି । କିନ୍ତୁ ଦରିଦ୍ର ଲୋକଙ୍କ ପାଇଁ ଜନ୍ମ ନିୟନ୍ତ୍ରଣ

ଏକାନ୍ତ ଆବଶ୍ୟକ । ଯଦି ଉପରୋକ୍ତ ସୁବିଧା ଗୁଡ଼ିକ ଏହି ଯୋଜନା ପାଇଁ ଲଗା କରାଯାଏ ତା ହେଲେ ଜନସଂଖ୍ୟା ବୃଦ୍ଧି ଅନେକ ପରିମାଣରେ ହ୍ରାସ ପାଇଯିବ । ତେଣୁ ସରକାର ଏହି ଦିଗରେ ମଧ୍ୟ ତାଙ୍କର ଦୃଷ୍ଟିଭଙ୍ଗୀ ବଦଳାଇବା ଆବଶ୍ୟକ ।

ଜଳସେଚନ କଥା କହିଲା ବେଳେ ଆଜି ବି ମନେ ପଡ଼ିଯାଉଛି ସଦାନନ୍ଦ ବାବୁଙ୍କ କଥା । ଆଜିର ଖଇରବାଙ୍କ ଜଳସେଚନ ଯୋଜନା ଯାହାକି ବର୍ତ୍ତମାନ ନିର୍ମାଣ ପଥେ ସଦାନନ୍ଦ ବାବୁ ହେଉଛନ୍ତି ତାର ଜନ୍ମଦାତା । ଖଇରବାଙ୍କ ଜଳଯୋଜନା ଫଳବଳଟି ଅସ୍ୱଚ୍ଛ ହୋଇ ପାରିବ ନାହିଁ ବୋଲି ନାଳଫିତାର ଡୋରି ବନ୍ଧା ହୋଇ ସାରିଥିଲା । କିନ୍ତୁ ସ୍ୱ.ତପେଣୁ ଗୋପ ଲପୁର ପଞ୍ଚାୟତର କୃଷୀଙ୍କୁ ଦରକାର ପାଣି । ତେଣୁ ଖଇରବାଙ୍କ ହେବାକୁ ହେବ । ସଦାନନ୍ଦ ବାବୁ ସେତେବେଳେ ବିଧାୟକ । ସଦାନନ୍ଦବାବୁ କି ଲୁହ ମୋଡ଼ିଲେ କେଜାଣି, ତତ୍କାଳୀନ କ୍ଷୁଦ୍ରଜଳ ସେଚନ ମୁଖ୍ୟ ଯନ୍ତ୍ରୀ ଇଂ ଶ୍ରୀ ବି. ଆର. ସ୍ୱାମୀ ଆସିଲେ ପୁଣି ଖଇରବାଙ୍କ ଜାଗା ଦେଖିବାକୁ । ସେ ଦେଖିବାପରେ ପୁଣି ସର୍ଭେକାମ ଆରମ୍ଭ ହେଲା ଏବଂ ନୂତନ ସର୍ଭେପରେ ଖଇରବାଙ୍କ ଯୋଜନା ହୋଇ ପାରିବ ବୋଲି ପୁଣି ସ୍ଥିର କୃତ ହେଲା । ଆଜି ଏହା ନିର୍ମାଣ ପଥେ । ତେଣୁ ସଦାନନ୍ଦ ବାବୁଙ୍କ ଦୃଷ୍ଟିଭଙ୍ଗୀ ଏବଂ ତାକୁ ରୂପଦେବା ଶୈଳୀ ଅତି ତାତ୍ପର୍ଯ୍ୟ ପୂର୍ଣ୍ଣ ଥିଲା । ସଦାନନ୍ଦ ବାବୁ ଆଜି ଆମ ପାଖରେ ନାହାନ୍ତି, କିନ୍ତୁ ତାଙ୍କର କାର୍ଯ୍ୟାବଳୀ, ତାଙ୍କର ପ୍ରେରଣା ଆମ ପାଖରେ ଜୀଇଁ ରହିଛି, ତେଣୁ ସେ ଅମର ।

ଗୌରଚନ୍ଦ୍ର ପ୍ରଧାନ
ଭୂତପୂର୍ବ ସମ୍ପାଦକ, ଗଞ୍ଜାମ ଜିଲ୍ଲା କୃଷକ ସଭା

# ବିପ୍ଳବୀ ସଦାନନ୍ଦ ମହାନ୍ତି

ଖବର କାଗଜରୁ ଦେଖି ଜାଣିଲି ସଦାନନ୍ଦ ବାବୁଙ୍କର ବିୟୋଗ ହୋଇଗଲା ଗତ ୧୬-୧୧-୯୧ ସନ୍ଧ୍ୟା ଘ ୬-୩୦ ମିନିଟ ବେଳେ କଟକ ବଡ଼ ଡ଼ାକ୍ତରଖାନାରେ । ଏହା ଦେଖି ମତେ ବଡ ଆଘାତ ଲାଗିଲା, ହଠାତ୍ ମୁଁ ଡରିଗଲି । ଅକାଳ ବୟସରେ ତାଙ୍କର ଏହି ଦାରୁଣ ସମ୍ବାଦ । କେତେଦିନ ହେଲା ତାଙ୍କର କାର୍ଯ୍ୟକଳାପ ଖବର କାଗଜରେ ଦେଖିବାକୁ ପାଉନଥିଲି । ମୁଁ ଭାବୁଥିଲି ସେ ମୋପରି ନିଷ୍କ୍ରିୟ ହୋଇ ଯାଇଛନ୍ତି ପରି ବୋଲି । ପରେ ସେ ରୋଗାକ୍ରାନ୍ତ ହୋଇ ଏପରି ଭୟଙ୍କର ଅବସ୍ଥାରେ ପଡ଼ିଥିବାର ଜଣେ ବନ୍ଧୁଙ୍କଠାରୁ ଜାଣିବାକୁ ପାଇଲି, କିନ୍ତୁ ସଦାନନ୍ଦ ବାବୁଙ୍କ ଏହି ଅକାଳ ବିୟୋଗରେ ଗଞ୍ଜାମ କମ୍ୟୁନିଷ୍ଟ ପାର୍ଟି ତଥା ଓଡ଼ିଶା କମ୍ୟୁନିଷ୍ଟ ପାର୍ଟି (ମାର୍କସବାଦୀ)ର ବିରାଟ କ୍ଷତି ହୋଇଗଲା, ଏହି ସ୍ଥାନ ପୂରଣ କରିବାକୁ ବହୁତ ସମୟ ଲାଗିଯିବ । ମୋର ସହକର୍ମୀ ସଦାନନ୍ଦବାବୁ ଛାତ୍ର ସଂଘ ଆନ୍ଦୋଳନ ଭିତରୁ ଜନ୍ମ ସେ ଗଞ୍ଜାମ ଜିଲ୍ଲା ଓ ଓଡ଼ିଶା ଛାତ୍ର ଆନ୍ଦୋଳନରେ ମୁଖ୍ୟ ଭୂମିକା ନେଇଥିଲେ, ଏହା ସଙ୍ଗେ ସଙ୍ଗେ ସେ ଗଞ୍ଜାମ ଜିଲ୍ଲା ରୟତ ଆନ୍ଦୋଳନରେ ମୁସ୍ତାଦାରୀ ପ୍ରଥା ଲୋପ ଓ ଜମିଦାରୀ ପ୍ରଥାର ଉଚ୍ଛେଦ ପାଇଁ ଯେଉଁ ବିରାଟ ଆନ୍ଦୋଳନ ସ୍ୱର୍ଗୀୟ ଗୋବିନ୍ଦ ପ୍ରଧାନ, ହରିହର ଦାଶ, ସ୍ୱର୍ଗୀୟ ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ, ଗୁରୁ ଚରଣ ପଟ୍ଟନାୟକ ସ୍ୱର୍ଗୀୟ ସାଧୁ ଚରଣ ମହାନ୍ତି, ସ୍ୱର୍ଗୀୟ ସୂର୍ଯ୍ୟ ନାରାୟଣ ଆଚାର୍ଯ୍ୟ, ସ୍ୱର୍ଗୀୟ ମୋହନ ଭୂୟାଁ, ଓ ରଘୁନାଥ ପଣ୍ଡାଙ୍କ ନେତୃତ୍ୱରେ ଯେଉଁ ବିରାଟ କୃଷି ଆନ୍ଦୋଳନ ହୋଇଥିଲା ସେଥିରେ ଯୁବ ଛାତ୍ର ସଦାନନ୍ଦ ମହାନ୍ତି ସକ୍ରିୟ ହୋଇ ନେତୃତ୍ୱ ନେଇଥିଲେ । ବିରାଟ ବିରାଟ କୃଷି ମୂଲିଆର ଆନ୍ଦୋଳନ ଓ ସଭା ସମ୍ମିଳନୀରେ ସେ ଯେଉଁ ଓଜସ୍ୱିନୀ ଭାଷଣ ଦେଇ ସେମାନଙ୍କୁ ସଂଗଠିତ, ଏକଜୁଟ ଓ ଚେତନଶୀଳ କରିବାରେ ଓ ଯୁଗ ଯୁଗରୁ ଶୋଷିତ ଏହି କୃଷି କୁଳକୁ ଏକଜୁଟ କରି ମୁସ୍ତାଦାରୀ ପ୍ରଥା ଓ ଜମିଦାରୀ ପ୍ରଥାକୁ ଗଞ୍ଜାମ ମାଟିରୁ ନିର୍ମୂଳ କରିବାରେ ତାଙ୍କର ଅବଦାନ କମ୍ ନୁହେଁ । ସେ ଏକାଧାରରେ ଭଲ ବକ୍ତା ଓ ସଂଗଠକ ମଧ୍ୟ ଥିଲେ । ସଦାନନ୍ଦବାବୁ ଧରାକୋଟ ଜମି-ଦାରୀ ତଥା ଗଞ୍ଜାମ ଜିଲ୍ଲାରେ ମୋର ସହକର୍ମୀ ଥିଲେ । କୃଷି ଆନ୍ଦୋଳନରେ ଗାଁକୁ ଗାଁ ବୁଲି ରୟତ ସଙ୍ଘର ସଭ୍ୟ ସଂଗ୍ରହ, ସଂଗଠନ, ରୟତ ପାଣ୍ଠି ସଂଗ୍ରହରେ ଏକାଠି କାମ କରୁଥିଲୁ । ଗୁଣ୍ଡୁପଡ଼ା, ସହାସପୁର ଖଣ୍ଡବନ୍ଧ, ସିଙ୍ଗନଥ, ମହାରାଜପୁର, ମଙ୍ଗଳପୁର, ମାଗୁର ପଲ୍ଲୀ, ବେଠିଆର ପ୍ରଭୃତି ଗାଁମାନଙ୍କରେ ରାତିରେ ରହି କୃଷିମାନଙ୍କ ଘରେ ଖାଇ ପିଣ୍ଡାରେ ଶୋଇ ନାନା କଷ୍ଟରେ ବର୍ଷାରେ ଓଦା ଓଦା ଗାଁମାନଙ୍କରେ ସଂଗଠନ କରିଥିଲୁ, ସେସବୁ କଥା ଗୋଟି ଗୋଟି ମନେପଡ଼ୁଛି । ୧୯୫୩, ୫୪ ମସିହାରେ ଥରେ ବଙ୍ଗପୁର ଥାନା ବଡ଼ ବୋଉସିଙ୍ଗି ଗାଁରେ ରାତିରେ ଦୁଇଜଣ ଯାକ ଖେତରେ ଦୁର୍ଜ ପ୍ରଧାନଙ୍କ ବଗାରେ କାଳ କଟାଇଲୁ, ଏହି ଗାଁ ଥିଲା ଆସିକା ସୋରଡ଼ା ନିର୍ବାଚନ ମଣ୍ଡଳୀର ସେତେବେଳର ଗୋଟିଏ ଗାଁ । ସେ ବ୍ୟକ୍ତି ଜଣେ ବିଦ୍ରୋହୀ ଲୋକ, ଗରିବ ପାହାଲକ୍ଷଣି ସେ ଆମ

ବୁଢ଼ୀଙ୍କୁ ଘର ଖୋଜିବାକୁ ବାରମ୍ବାର କହିଲେ, କିନ୍ତୁ ଖାଇବାକୁ ଆମଠାରେ ପଇସା ନାହିଁ । ହରିବାବୁ ପରଦିନ ୧୦ଟାରେ ଆସିବାରୁ ଯାଇ ସେଠାରେ ପହଞ୍ଚିଲେ । ଆମକୁ ସେ ଗାଳିଦେଇ କହିଲେ ତମେ ଏ ଲୋକର ଦ୍ୱାରେ ରହିଲେ ତମ ପାଖକୁ କିଏ ଆସିବେ ହେ । ଜଣେ ଗରିବ କୃଷୀ ଘରେ ଥିଲେ ସିନା ତମକୁ ଆଦର ମିଳିଥାନ୍ତା । ଏହାପରେ ସାଇକେଲ ସାହାଯ୍ୟରେ ସଦାନନ୍ଦବାବୁ, ହରିହର ବାବୁ, ହରିବାବୁ ମୁଁ ମିଶିକରି କୁଲଙ୍ଗି, ଲଠିପଡ଼ା ଇତ୍ୟାଦି ସେ ଅଞ୍ଚଳର ପ୍ରତି ଗାଁ ବୈଶାଖ ଖରାରେ ବୁଲି ପ୍ରଚାରକରି ସନ୍ଧ୍ୟାରେ ଖାଣ୍ଟଗୁଡ଼ା ନାମକ ଏକ ପଲ୍ଲୀ ଗାଁରେ ପହଞ୍ଚିଲୁ । ଦିନସାରା ଖାଇ ନାହୁଁ । ଭୋକରେ ଦୁର୍ବଳ ହୋଇଯାଇଛୁ । ହରିବାବୁ ହାସ୍ୟ ରସରେ ଜଣେ ଲୋକକୁ କହିଲେ ହେ ବାବୁ, ତମେତ ଆମ ମୋହନ ଭୂୟାଁଙ୍କ କାଳିଆ ଜାତିର ଲୋକ, ଆମକୁ ଭୋକ ହେଉଛି ଜାଉ କିଛିଏ ଦିଅ, ଆମେ ଖାଇବୁ । ସେ ରାଗରେ ଉଠିପଡ଼ି କହିଲେ ତମର କ'ଣ ଜାତି ନାହିଁ ? ଉତ୍ତରରେ ହରିବାବୁ କହିଥିଲେ—ଆମେ ଅଣ୍ଡର ଗ୍ରାଉଣ୍ଡରେ ଲୁଚି ଛପି ରାଜନୀତି ପ୍ରଚାର କରୁଥିଲା ବେଳେ ତମପରି ଲୋକେ ଆମକୁ ଖାଇବାକୁ ଦେଇଥିଲେ ଓ ଆମକୁ ପୋଲିସ୍ ଗିରଫରୁ ରକ୍ଷା କରିବାକୁ ଘରକୁ ଘର ଡେଇଁ ପାରି କରାଇ ଦେଉଥିଲେ । ଏହା ପରେ ସେ ଗାଁର ଅନ୍ୟ ଜଣେ ଲୋକ ଦହି ଚୂଡ଼ା ସଂଗ୍ରହ କରି ସନ୍ଧ୍ୟାରେ ମେଞ୍ଚେ ଲେଖେ ଦେଇଥିଲେ ।

**ଜେଲ୍ ଯାଙ୍ଗ :—**

୧୯୪୯ ଠାରୁ ୧୯୫୧ ଯାଏ ଦୀର୍ଘ ୩ ବର୍ଷ କାଳ ବ୍ରହ୍ମପୁର ଜେଲରେ ସଦାନନ୍ଦ ବାବୁ ପ୍ରଭୃତି ୫୦ ଜଣ ଯାଏ ଆମେ ଅଟକ ବନ୍ଦୀରେ ଥିଲୁ । ସଦାନନ୍ଦ ବାବୁ ସକାଳ ୭ଟା ଠାରୁ ୧୧ଟା ଯାଏ ରାଜନୀତି କ୍ଲାସରେ ମାର୍କସ୍‌ବାଦ ପଢ଼ାଉଥିଲେ । ଏଠାରେ ରାଜନୀତି ଜାଣିବାରେ ଆମ ସୁଯୋଗ ପାଇଲୁ । ତାକରଡା ଗୁଳି କାଣ୍ଡରେ ସଜା ପାଇଥିବା କୃଷୀମାନେ ଆମ କେମ୍ପରେ ରହି, କ୍ଲାସରେ ଯୋଗଦେଇ ରାଜନୀତି ଶିକ୍ଷା, ଶୃଙ୍ଖଳା ଜାଣିବା ସୁଯୋଗ ପାଇଥିଲେ । ଜେଲଖାନାରେ ବିଭିନ୍ନ ଫଙ୍କସନ୍‌ରେ ସଦାନନ୍ଦବାବୁଙ୍କ ପ୍ରେରଣା ନେତୃତ୍ୱ ବିଶେଷ ଭାବେ ପରିଲକ୍ଷିତ ହେଉଥିଲା । ଡ୍ରାମା, ସଭାରେ ବକ୍ତୃତା ଦେବା ଓ ବିଭିନ୍ନ କବିତା ଓ ଲେଖା, ଦାସକାଠି ପୁଡ଼ୁକୁନାଚ ଜରିଆରେ ପ୍ରତିଯୋଗିତାମାନଙ୍କରେ ସଦାନନ୍ଦବାବୁଙ୍କ ନେତୃତ୍ୱ ବିଶେଷ ଉତ୍ସାହ ଯୋଗ ଉଥିଲା ।

**ଅନଶନ :—**

ବ୍ରହ୍ମପୁର ଜେଲରେ ଦୀର୍ଘ ୫୭ ଦିନ ଅନଶନରେ ଜେଲ ଖାନାର ପ୍ରାୟ ୫୦ ଜଣଯାଏ କମ୍ୟୁନିଷ୍ଟ ଅଟକ ବନ୍ଦୀ ମରଣମୁଖୀ ଓ ଶଯ୍ୟାଶାୟୀ ହୋଇ ପଡ଼ିଥିଲୁ । ରାଧାକୃଷ୍ଣ ପ୍ରଧାନ ଓ ମୋର ଅବସ୍ଥା ସାଂଘାତିକ ହୋଇ ଯାଇଥିଲା । ହିକ୍କା ହୋଇ ମରିଯିବାର ସଂକଟାପନ୍ନ ଅବସ୍ଥାରେ ରାଧାକୃଷ୍ଣବାବୁଙ୍କ ଅବସ୍ଥା କିଛିଏ ବଦଳିଗଲା । ମୋ ଅବସ୍ଥା ସାଂଘାତିକ ହେବାରୁ ଜେଲସୁପରିନ୍‌ଟେଣ୍ଡେଣ୍ଟ ଡକ୍ଟର ଗୋପାଳ କୃଷ୍ଣ ନନ୍ଦ ମୋ ପାଖକୁ ଜେଲ ହସ୍‌ପିଟାଲକୁ ରାତି ୯ଟା ବେଳେ ତାଲାଫିଟାଇ ଆସି ମୋତେ ଅନଶନ ଭାଙ୍ଗିବାକୁ କହିଲେ, ସମସ୍ତେ ଖାଇଲେଣି, ତମେ ଖାଅ । ୫୦ ଜଣଯାକ ଆମର ଜେଲ ବନ୍ଦୀଙ୍କ ଦାବୀ ପୂରଣ ହେଲେ ଅର୍ଥାତ୍ ଅଦାଲତରେ ବିଚାର କରି ନିର୍ଦ୍ଦୋଷୀ ଲୋକଙ୍କୁ ଖଲାସ୍ କଲେ ଯାଇ ଅନଶନ ବନ୍ଦ ହେବା କଥା ଜେଲ୍‌ସୁପରିନ୍‌ଟେଣ୍ଡେଣ୍ଟଙ୍କୁ କହିଲି ଏବଂ ଆମଦାବୀ ସବୁ ପୂରଣ କରିବାକୁ ଏବଂ ସମସ୍ତଙ୍କୁ ଏକାଠି କରି ବିଚାର କରିବାକୁ ସୁବିଧା ଦେଲେ ଯାଇ ଅନଶନ ବନ୍ଦ ହେବା କଥା ତାଙ୍କୁ ଜଣାଇଲି ପରେ ଡାକ୍ତର ନନ୍ଦ ପରଦିନ ସମସ୍ତ ନେତା ମାନଙ୍କୁ ଜେଲ ହସ୍‌ପିଟାଲ୍ ଠାରେ ସେଲ ମାନଙ୍କରୁ ଆଣି ଏକାଠି କଲେ । ବିଚାର ଆଲୋଚନା ପରେ କେତେକ ଦାବୀ ପୂରଣ କରି ବାକି ସରକାରକୁ ଲେଖିବାକୁ ପ୍ରତିଶ୍ରୁତି ଦେଲା ପରେ ଦୀର୍ଘ ୫୭ ଦିନର ଅନଶନ ବନ୍ଦ ହେଲା । ଏହା ପରେ ସଦାନନ୍ଦ ବାବୁ ଅନ୍ୟଜେଲକୁ ବଦଳି ହୋଇ ପରେ ଖଲାସ ହେଲ ଓ ବାହାରେ ସଭାସମିତି ମାନ କରି ଆମ ମାନଙ୍କୁ ଖଲାସ କରିବାକୁ ସଭାସମିତି କରି ପ୍ରତିବାଦ କରିଥିଲେ ।

**ଆସିକାରୁ ଭୁବନେଶ୍ୱର ପଦଯାତ୍ରା—**

ଜମିଦାରୀ ଉଚ୍ଛେଦ, ମୁସ୍ତାଦାରୀ ପ୍ରଥା ଲୋପ ଲାଗି ଓ ଦର ଦାମ ବୃଦ୍ଧି ରୋକିବାକୁ ଐତିହାସିକ ପଦ ଯାତ୍ରା ଆସିକା ଠାରୁ ଭୁବନେଶ୍ୱର ଯାଏ ହୋଇ ଥିଲା । ଏଥିରେ ସେ ମୁଖ୍ୟ ନେତୃତ୍ୱ ନେଇଥିଲେ । ରାତି ୧୦ ଟାରେ ଆମ ପଦଯାତ୍ରା କଟଣୀ ଠାରୁ ଯାଆଁଳ ଯାଏ ଗଲା ବେଳେ ଅନ୍ଧାର ରାତିରେ ବାଟ ଦିଶୁ ନଥାଏ । ଗୁଳି ଗୁଳି ହାଲିଆ, ଗୋଡ଼ ସବୁ ଫୁଲି ଗଲାଣି, କେତେ ଉଠାଇ ହେଉନି । ଏପରି ଅବସ୍ଥାରେ ଯାଆଁଳା କେମ୍ପକୁ ଯିବାକୁ ମୋପରି କେତେକ କର୍ମୀ ଅସହାୟ ହୋଇଥିବା ବେଳେ ସେ ଧର୍ମ ଯୁଧିଷ୍ଠିରଙ୍କ ହିମାଳୟ ଯାତ୍ରା ବେଳେ ଭାଇ ମାନଙ୍କ ଯାତ୍ରାର ଅସାମର୍ଥ୍ୟରେ ଯେ ରହୁଛୁ ରହ' ବୋଲି କହିଲା ପରି ସେ ଅନ୍ୟ ମାନଙ୍କୁ ଉଚ୍ଚ ସ୍ୱରରେ କହି ପଦ ଯାତ୍ରାରେ ଆଗେଇ ଯିବାକୁ କହି ବଳ ଦେଇ ଥିଲେ ।

ଶେଷରେ ତାଙ୍କର ୭୭ ବର୍ଷ ବୟସରେ ଅକାଳ ବିୟୋଗ ହୋଇ ଯାଇଥିବାରୁ ମୁଁ ସହକର୍ମୀ ହିସାବରେ ଗଭୀର ଦୁଃଖ ଅନୁଭବ କରିବା ସଙ୍ଗେ ସଙ୍ଗେ ସଦାନନ୍ଦ ବାବୁଙ୍କର ଶୋକାକୁଳ ପରିବାରକୁ ମୋର ଅନ୍ତରର ସମବେଦନା ଜଣାଉଛି ।

**କମରେଡ ରଘୁନାଥ ପଣ୍ଡା**
ସ୍ୱାଧୀନତା ସଂଗ୍ରାମୀ
ଗୁଣ୍ଡପଡ଼ା (ଆସିକା) ଗଞ୍ଜାମ

# COM. SADANANDA MOHANTY AS I KNOW

I am proud that I belong to the early age activities of Com. Mahanty. Today I feel fresh in my memory the revolutionary ferver of Com. Mahanty with whom I was associated for full seven years. Those were the days, 1950-1957 with limited resources he was to function as a frontel guiding star in the party to guide the students' wing, the AISF, which was a complex and multiple task for him. We have seen him working untiringly with sleepless nights. In my opinion he understood the Marxism and Leninism best as he was directly associated with our political master late Com. Bijoyo Dash. He was a unifying force at the time of dissention and confusion.

He will remain alive in my memory as long as I live.

**Bhagabati Prasad Padhi**



# A TRIBUTE

It was at about 7-30 P. M. on 16 th of this month, when I was preparing for the next day's Legal Aid Literacy Camp, that I received a phone call from M. L. A. Sri Nityananda Pradhan, a family friend. The news he conveyed to me was a bolt from the blue "Sadananda Babu expired" was the criptic message. I was stunned. Sadananda Mohanthy, the veteran leader of the Communist Party of India, the advocate of the peoples cause, the freedom fighter, the revolutionary, the man of the masses and above all my friend, philosophy and guide since my childhood is no more. What could be more shocking then this ?

Sadananda is only two years older to me. He hails from Alapur a village near to that of mine and has his relations in my village. Thus as a child when he used to visit his relations who are my immediate neighbours. I was attracted towards him and we became friends. It so happened that both of us joined the Board High School (later Narasing Das High School) Purushottampur in class four in the year 1935 and became a classmates till 1947 with a gap of two years when he went to Chatrapur for his fifth form and School final classes. By village courtesy he was my brother. But the love and affection I received from him till his last was no less than the love and affection of my own elder brothers.

He was a born revolutionary and an ardent lover of freedom. Thus as a student of class VII then second form, he was attracted towards Terrorism and hailed the murder of the white manager of the Aska Imperial Bank, sheltering a Champitaray of Khurda who was then a terrorist.

Another instance of his revolutionary nature and fighter for a just cause is that when we were students of fourth form (9th class) we were made to sit in a class room with asbestos roof. In summer the plight of the students was miserable. It was as if their heads were spliting with the beat. One day when one Mr. Franklin K. Mohanty was taking grammer class, he stood up and said "Sir, the heat is unbearable, we are not able to sit inside this room. Our teacher Mr. Mohanthy replied that if he is unable to sit he may get out. At that time Sadananda was holding his grammer book "Wren and Mortins" which he threw away unmindfully and quitted the class. Unfortunately that struck to the belly of our teacher. Sensing danger of rustication I went to his rescue and I followed him after which our common friend Ram Mohan Jena who is now a retired Station Master or so of the O. R. T. followed and one by one the class was emptied in protest. Later there was compromise and no diceplinary action was taken against any.

As stated earlier we parted the next year when he went to Chatrapur and joined in the onslow Institution till S. S. L. C. Again in 1944 we joined in 1st year Arts of Khallikote College.

He was a brilliant student through out. A lover of freedom and a revolutionary as he was he founded the Student Federation in Ganjam against all odds took active part in the anti-union Jack movement and joined the Communist Party at a time when the party was under much stress and stain being attacked by the Indian National Congress as a party of traitors for declaring the 2nd World War as a peoples war and adocating support to the Brit-

ishers against Hitler. Under his able leadership, the all Orissa Students Federation Conference held in Utkal Ashram in the year 1946, which was presided by Dr. Kalandi Panigrahi and addressed by Dr. Achiamamba ias ts Chief Guest was a great succcess. I remember our Ex.Chief Minister, Mrs. Nandani Satapathy, who was then a member of the Stundent Federation, giving a dance performance to the pleasant surprise of the audiance the following year Sadanand, Biswanath Sahu, myself, Dr. Nirupama Rath, Retd Joint Secretary of Fianance Department Sri Bansidhar Satpathy, attended the A. I. S. F. conference held in Bombay. Sri Morarji Desai was then the Prime Minister of Bombay. He banned the conference. Thus Kamugarh Maidan the Venue of the Confernce and its entrance were heavily guarded by armed constabulary. For two days we held our delegate sessions in a nearby college and on the 3rd day defined the ban and held our validectory session in the Maidan amidest byonet and lathi charge and bullets and Teargas. Biswanath was severely injured by a byonet and became senseless. I too became senseless when a teargas shell brust near my head and both of us were hospitalised like many others from different parts of the Country and see the anxiety of. Dr. Rath and Sadananda. I later byonet that both of them were more worried for me than for any one else and the predominent thought of Sadananda was that, what answer he would give to my parents if any thing happens to me. During our College days study was secondary to him. Yet he never failed in any examination and was always above any average students. When he did not appear in his first year annual examination our Principal insisted upon detaining him. But our Economics Lecturer Mr. S. Saranga Pani who became the Dean of Faculty of Economics in Gouhati University pleaded for him saying that his mental presence out weighs his physical absence and ultimately succeeded in getting him promoted.

Inside the Communist Party his Comradrie was unique. Once during great Takarada peasent movement when the party was in Gollil Street, he along with late lamented comrades Haribandhu Behera and Venugopal and a few other comrades including Com. D.K. Panda, M.L.A. who was then Party Secretary returned to the office at dark. By then a small boy serving as a cook and myself were present. He enquired from the boy about availability of rice, dal, fuel etc. for cooking and when the boy give a negative reply he collected half a rupee from all of us which was the only money available and seing the amount be insufficient for purchasing ration for all directed the boy to get fried rice and onion and shared the same with other for the night with content.

He was a great iover of people and be friended one and all who came in contact with him irrespective of their status and State and Jealously fought for the oppressed and down trodown till his last. A good orator, he always kept him audience spell bound and attracted them towards the cause he was exposing.

He had immence love and affection for me and even at this age of mine I was always treated by him as an young boy. In him I have lost a friend, philosopher and Guide.

May his soul rest in peace.

**Narasing Panda**
Advocate; Berhampur



# REMEMBERANCE OF THE EARLY DAYS OF RESPECTED SADANANDA MOHANTY AFTER LEAVING THE EARTH

Respected Sadananda,

The death news knowing from papers shocked me and took me to remember certain past activities of yours

1. Being neighbouring villagers we came to know eachother for first time in the year 1937-38 in N. D. High school, Purushottampur, Boarding while you were in the first form (v) and myself in fourth class and both putting up in the said boarding and enjoying your wit, honour and cutting jokes with eachother, coming out of your intellectual brain, though sometimes called mischief.

2. This again reminds me of the respected teachers cum warden, Narasingha Mohapatro who is no more alive taking you to task considering the said wit etc. as mischief.

3. I am to see yet another so far as your studies and performing the same in examination as a student, it is superb.

4. I am unable to forget the incident of yours regarding Franklin K. Mohanty, teacher while you were in High School class in leaving the institution as desired by the then Headmaster Kalia Panigrahy though for given by the said teacher.

5. I am still remembering your competition with Sri Balabhadra Bhatta Misra your classmate now in states remembering him at bus-stand near the Rushikulya river. This rememberance goes back regarding you in Khallikote College facing the command of the then Vice-President L. Panigrahy who also was elivated to the bench of Orissa High Court.

It is beyond my afford to forget yourself along with life Laxman Mohapatro coming to Ganjam Bar Berhampur and disagreeing with the price rice of paddy said by the then senior advocate, Divakar Subudhi and myself taking part in the silence against your said views taking advantages of our attachment from school career.

Last but not the least is when you jokingly asked me to arrange for your food in my house a few years back. The food which was prohibited to you medically due to your ill health any my accepting the same with challenging spirit in form of jokes as in our early age. I am remembering also how in the high school boarding you went on cutting jokes with me for a period regarding my father giving a few coppers to purchase groundnut etc. like other students found by my father, particularly because both the parents residing in the neighbouring villages knowing eachother.

Now, I am to say that you my dear friend Sadananda have left the earth and I am sure you have attained the divinity due to your sacrifice for the teeming millions. You have left me for ever my dear friend, I pray let your soul rest in peace.

**Bhaskar Sabat**
Advocate,
Berhampur-760001

ମୋର ବନ୍ଧୁ ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ନେତା ଓ ସାଥୀ ଶ୍ରୀ ସଦାନନ୍ଦ ମହାନ୍ତିଙ୍କର ବିୟୋଗ ମୋତେ ଅତ୍ୟନ୍ତ ମର୍ମାହତ କରିଛି । ତାଙ୍କ ସହିତ ବିଭିନ୍ନ ରାଜନୈତିକ ଆନ୍ଦୋଳନରେ ମୁଁ ସାମିଲ ହୋଇଛି ଏବଂ ତାଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କ ଦ୍ୱାରା ମୋର ଜୀବନରେ ମୁଁ ବହୁତ ଉତ୍ସାହିତ ହୋଇଛି ।

ସେ ଜଣେ ବନ୍ଧୁ ବତ୍ସଳ ବ୍ୟକ୍ତି ଥିଲେ । ରାଜନୈତିକ ବିରୋଧ ଏବଂ ବ୍ୟକ୍ତିଗତ ବନ୍ଧୁତ୍ୱ ଭିତରେ ସେ ବରାବର ବ୍ୟବଧାନ ରଖି ଆସୁଥିଲେ । ରାଜନୈତିକ ସମ୍ପର୍କ କ୍ଷୁଣ୍ଣ ହେଲେ ବି ବ୍ୟକ୍ତିଗତ ବନ୍ଧୁତ୍ୱ ତାଙ୍କ ସହିତ କ୍ଷୁଣ୍ଣ ହୋଇ ନଥିଲା । ସେ ଜଣେ ସଫଳ ବିଧାୟକ ଭାବରେ ବିଧାନସଭାରେ ଯେଉଁ କାର୍ଯ୍ୟ କରିଯାଇଛନ୍ତି ତାହା ଆମ ରାଜନୈତିକ ବ୍ୟକ୍ତି ତଥା ଓଡ଼ିଶାର ଜନସାଧାରଣଙ୍କ ପାଇଁ ଅବିସ୍ମରଣୀୟ ହୋଇ ରହିବ । କାର୍ଯ୍ୟବ୍ୟସ୍ତତା ଯୋଗୁଁ ଭୁବନେଶ୍ୱରରେ ନଥିବାରୁ ମୁଁ ତାଙ୍କର ଶେଷ ଦର୍ଶନ କରି ପାରିନପାରି ଅତ୍ୟନ୍ତ ବ୍ୟଥିତ । ତାଙ୍କର ଅମର ଆତ୍ମା ଉଦ୍ଦେଶ୍ୟରେ ମୁଁ ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଉଛି ଏବଂ ତାଙ୍କର ଶୋକ ସନ୍ତପ୍ତ ପରିବାରବର୍ଗଙ୍କ ପ୍ରତି ସମବେଦନା ପ୍ରକାଶ କରୁଅଛି ।

**ଯୁଧିଷ୍ଠିର ଦାସ**
**ତା ୨୨.୧୧.୯୧**

# CONDOLENCES

I am deeply schoked to know that a veteran communist leader, an eminent politician and above all a great protagonist of humantarianism, Sri Sadananda Mohanty is no more. Throughout his life Sri Mohanty fought tooth and nail for the cause of the downtrodden, depressed and exploited mass of the society and in the process became the most cherished leader of this leaderless, hopeless, annihilated and unfortunate mass. Being a born revolutionary he was deeply committed to spread the message of revolution in the length and breadth of this country with a view to uphold the values of social justice and to establish a society free from disparity and dominance by one class by the other. As a versatile genius and dedicated social worker, this noble soul will remain as a beaconing light from ages to ages.

(NARASINGHA MISHRA)

# ଏକ ଟାଣୁଆ ନେତୃତ୍ୱର ଅବସାନ

**ବାସୁଦେବ ସାମଲ**

'ସେ ସିନା ଅକ୍ଷମ ହୋଇଯାଇଥିଲେ; କିନ୍ତୁ ଆଉ ଅଧିକ କାଳ ବଂଚିରହି ପରାମର୍ଶ ଦେଉଥିଲେ ଦେଶର କେତେ କାମରେ ଲାଗିନଥାନ୍ତା ?' ପୁରୀ ସ୍ୱର୍ଗଦ୍ୱାର ମଧ୍ୟରେ ଥିବା ମ୍ୟୁନିସିପାଲିଟି ଅଫିସ ବାରଣ୍ଡାରେ ଜଣେ ବୃଦ୍ଧା କୋହ ଭରା କଣ୍ଠରେ କହୁଥାନ୍ତି ।

ଦା ହାତୁଡିର ଲାଲ ପତାକା ଉଡୁଛି ସ୍ୱର୍ଗ ଦ୍ୱାରର ବାଲି ଉପରେ । ଏହି ପତାକା ପାଖରେ ଶୋଇଯାଇଛନ୍ତି କଃ ସଦାନନ୍ଦ ମହାନ୍ତି- ଆଉ ଉଠିବାର ନାହିଁ । ପାଖରେ ଲୁହଭିଜା ଆଖିରେ ଠିଆ ହୋଇଛନ୍ତି । ତାଙ୍କରି ହାତ ତିଆରି ନେତୃତ୍ୱ ବିଧାୟକ ଶ୍ରୀ ନିତ୍ୟାନନ୍ଦ ପ୍ରଧାନ, ବର୍ଷୀୟାନ ସ୍ୱାଧୀନତା ସଂଗ୍ରାମୀ ତଥା କମ୍ୟୁନିଷ୍ଟ ନେତା ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାନ୍ତି, କମ୍ୟୁନିଷ୍ଟ ନେତା ନନ୍ଦ କିଶୋର ପଟ୍ଟନାୟକ, ଅନୁଗତ ଯୁବ ନେତୃତ୍ୱ- ଶ୍ରୀ ନିଳୁ ପାଟଯୋଶୀ, ବାଲ୍ୟ ବନ୍ଧୁ ସାମ୍ବାଦିକ ଶ୍ରୀ ରାମକୃଷ୍ଣ ବେହେରା, ଦ୍ୱିତୀୟ ପିଢୀର ଯୁବନେତୃତ୍ୱ ଶ୍ରୀ ନରେନ୍ଦ୍ର କୁମାର ସ୍ୱାଇଁ, ଶ୍ରୀ ଅକ୍ଷୟ ପ୍ରଧାନ, ଶ୍ରୀ ଆଶିଷ କାନୁନଗୋ ଏବଂ ମୋ ପରି ବହୁ ଅନୁଗତ ଓ ବନ୍ଧୁ ପରିଜନ ଏବଂ ଏକମାତ୍ର ପୁତ୍ର ଅଶୋକ କୁମାର ଏବଂ ଅନୁଗତ ଶ୍ରୀ ପ୍ରଫୁଲ୍ଲ ତ୍ରିପାଠୀ ।

ପଞ୍ଚୁକ ପାଇଁ ଗଞ୍ଜାମରୁ ଆସିଥିଲେ ପ୍ରାୟ ୨୦୦ ମହିଳା । ସ୍ୱର୍ଗଦ୍ୱାରରେ ପହଞ୍ଚି ଦେଖନ୍ତି ଅତି ଆପଣାର ନେତା କଃ ସଦାନନ୍ଦ ମହାନ୍ତିଙ୍କ ମରଶରୀରକୁ । ଏତେବଡ ଟାଣୁଆ ନେତାଙ୍କର ଏତେଶୀଘ୍ର ଅବସାନ ହୋଇଯିବ- ଏହା ସମସ୍ତଙ୍କ ସ୍ୱପ୍ନର ବାହାରେ ଥିଲା । ଯୁଇ ଉପରକୁ ମର ଶରୀର ଉଠିବା ବେଳେ ଉପସ୍ଥିତ ମହିଳା ମାନେ ଛଳଛଳ ଆଖିରେ ହୁଳହୁଳି ଦେଉଥାନ୍ତି । ବସିଥାନ୍ତି ସମସ୍ତେ ସେହିଠାରେ ଯୁଇ ଜଳିଯିବା ପର୍ଯ୍ୟନ୍ତ । ମହିଳାମାନେ କିନ୍ତୁ ସଦାନନ୍ଦ ବାବୁଙ୍କ ଦଳର ସଭ୍ୟ ନଥିଲେ । କିନ୍ତୁ ଏପରିଜଣେ ଟାଣୁଆ ନେତାଙ୍କ, ହରାଇ ସେମାନେ ଦୁଃଖରେ ଭାଙ୍ଗିପଡିଥିଲେ । ଏଇତ ଥିଲା ତାଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

ପୁରୀ ସ୍ୱର୍ଗଦ୍ୱାରରେ ତାଙ୍କ ଶେଷ କୃତ୍ୟ ସଂପନ୍ନ ହେବା ନିଷ୍ପତ୍ତି ଥିଲା ତାଙ୍କ ପତ୍ନୀଙ୍କର । ଏହାକୁ କିନ୍ତୁ ଏଡାଇଦିଆଯିବା ସମ୍ଭବପର ନଥିଲା । ଜୀବନ ସାରା ଯିଏ ସମାଜର ତଳେ ପଡିଥିବା ଖଟିଖିଆ ମଣିଷ ପାଇଁ ସଂଗ୍ରାମ କରି ଜୀବନକୁ ତିଳ ତିଳ କରି ନିଃଶେଷ କରିଥିଲେ ତାହାଠାରୁ ବଳି ସାର୍ଥକ ଜୀବନ କ'ଣ ଆଉ ଥଇପାରେ ! ଆଜି ଗଞ୍ଜାମ ଜିଲ୍ଲାର ମେହନତୀ ଜନତା ଆଖିରେ ଲୁହ । ଶେଷ ଦର୍ଶନ କରିଥିଲେ ସେ ତାର ହୃଦୟର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ଦେଇପାରିଥାନ୍ତା । ଭାରତୀୟ କମ୍ୟୁନିଷ୍ଟ ପାର୍ଟି, ଓଡିଶା ରାଜ୍ୟ ପରିଷଦର ସାଧାରଣ ସଂପାଦକ ଭାବେ ଦୀର୍ଘ ଦିନ ଧରି ବଳିଷ୍ଠ ନେତୃତ୍ୱ ଦେଇଆସିଥିଲେ । ଓଡିଶାର ପ୍ରତ୍ୟେକ ଶ୍ରମଜୀବୀ ଆଖିରେ ଆଜି ଲୁହ । ଅଦିନରେ ଚାଲିଗଲେ ସଦାନନ୍ଦ ବାବୁ । ମାତ୍ର ୬୮ ବର୍ଷ ।

ତାଙ୍କ ହାତ ତିଆରି ଭଗବତୀ ଭବନ ବାରଣ୍ଡାରେ ଶୋଇଯାଇଥିଲେ ସବୁଦିନ ପାଇଁ । ସବୁଦଳ, ମତର ନେତୃବୃନ୍ଦ ଶ୍ରଦ୍ଧାଞ୍ଜଳି ଦେବାକୁ ଆସିଥାନ୍ତି । କୃଷି ମନ୍ତ୍ରୀ ଶ୍ରୀ ଜଗନ୍ନାଥ ମଲ୍ଲିକ ଅଶ୍ରୁଳ ନୟନରେ ଆବେଗ ଭରା କଣ୍ଠରେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଥାନ୍ତି । ରାଜନୈତିକ ମତପାର୍ଥକ୍ୟ ଭିତରେ ମଧ୍ୟ ସଦାନନ୍ଦ ବାବୁ ସମସ୍ତଙ୍କର ଆପଣାର ହୋଇପାରିଥିଲେ । ଏଇତ ସାର୍ଥକ ଜୀବନ ।

ତାଙ୍କ ସହ ମୋର ସଂପର୍କ ୧୯୭୫ ମସିହାରୁ । ଆଜି ବନ୍ୟାଞ୍ଚଳରେ ବନ୍ୟା ଯୋଗୁ ଅକଥନୀୟ କ୍ଷୟକ୍ଷତି ହୋଇଥାଏ । ଚଳିତ ବର୍ଷ ପରି ଲୋକେ ଅନ୍ନ କଷ୍ଟରେ ଦିନ କାଟୁଥାନ୍ତି । ବିଧାନସଭାରେ ସଦାନନ୍ଦ ବାବୁଥାନ୍ତି କମ୍ୟୁନିଷ୍ଟ ପାର୍ଟିର ନେତା । ମନ୍ତ୍ରୀ ଶ୍ରୀ କାହ୍ନୁଚରଣ ଲେଙ୍କାଙ୍କ ସହ ସୁସଂପର୍କ ଥାଏ । କାହ୍ନୁବାବୁ ଓ ସଦାନନ୍ଦ ବାବୁଙ୍କୁ କହିଲି "ଆମ ଅଞ୍ଚଳର ବନ୍ୟା ବିପନ୍ନ ଲୋକଙ୍କ ଅବସ୍ଥା ଦେଖିଆସିବା ଚାଲନ୍ତୁ" । କାହ୍ନୁବାବୁ ସଦାନନ୍ଦବାବୁଙ୍କୁ କହିଲେ " ଚାଲନ୍ତୁ ଯିବା" । ସଂଗେ ସଂଗେ କାହ୍ନୁବାବୁ, ସଦାନନ୍ଦ ବାବୁ, କଂଗ୍ରେସ ଦଳର ମୁଖ୍ୟ ସଚେତକ ସ୍ୱର୍ଗତ ଶ୍ରୀ ଶୈଳେନ୍ ରାୟ, ବିଧାୟକ ଶ୍ରୀ ରଘୁ ରାୟ ସାଥୀ ହୋଇ ବାହାରିଲେ ଆଜି ବନ୍ୟା ବିପନ୍ନ ଅଞ୍ଚଳକୁ, ଏ ଅନୁଭତି ଭୁଲିବାର ନୁହେଁ । ବିଞ୍ଝାରପୁରରୁ ଲକ୍ଷ ଯେଗେ ବିପନ୍ନ ଗ୍ରାମ ଗୁଡିକ ଦେଖିଲୁ । କେନ୍ଦ୍ରାପଡାରେ ରହି ମୋତେ ରିଲିଫ କାମ ତଦାରଖ କରିବାକୁ କାହ୍ନୁବାବୁ ପରାମର୍ଶ ଦେଲେ । ସଦାନନ୍ଦ ବାବୁ କିନ୍ତୁ ଜିଦ୍‌କରି ମୋତେ କଟକ ନେଇଆସିଲେ ଫାସିବାଦ ବିରୋଧୀ ସମ୍ମିଳନୀର ଆୟୋଜନ କରିବା ପାଇଁ । ଏହି ପ୍ରତିନିଧି ଦଳର ବିବରଣୀ ଉପରେ ସରକାର ବ୍ୟାପକ ରିଲିଫ ସାମଗ୍ରୀ ପଠାଇଲେ । ଆଜି ହୁଏତ ସେ ବଞ୍ଚିଥିଲେ ଆଜି ବନ୍ୟା ବିପନ୍ନ ଲୋକଙ୍କ ଅନ୍ନ କଷ୍ଟ କଥା ଶୁଣି ସରକାରଙ୍କୁ ଦି'ପଦ ଲେଖିଥାନ୍ତେ । ଗରିବ, ଅବହେଳିତ ଲୋକଙ୍କ ସମସ୍ୟାକୁ ନିର୍ଭୀକ ଭାବେ ଉପସ୍ଥାପିତ କରିବାରେ ସେ ଥିଲେ ଅନନ୍ୟ । ଆଜି ସେପରି ବ୍ୟକ୍ତିତ୍ୱ କ୍ୱଚିତ ଦେଖିବାକୁ ମିଳୁଛି । ରାଜନୀତି ସମସ୍ତେ କରୁଛନ୍ତି । କିନ୍ତୁ ଲୋକଙ୍କ ଜୀବନ ଜୀବିକାର ସମସ୍ୟା ନେଇ

ସେପରି ଲଢେଇ ଆଜି ନାହିଁ ।

ସଦାନନ୍ଦବାବୁ ଯେପରି ନିର୍ଭୀକ, ସ୍ପଷ୍ଟବାଦୀ, ବାଗ୍ମୀ ସେହିପରି ମଧ୍ୟ ଦରଦୀ ବନ୍ଧୁ ଥିଲେ । ଜୁଲାଇ ମାସ ଶେଷ ଭାଗରେ ମୋର ଏକ ସ୍କୁଟର ଦୁର୍ଘଟଣାରେ ମୁଁ ଶଯ୍ୟାଶାୟୀ ଥିଲି । ଏ ସମ୍ବାଦ 'ସମାଜ'ରୁ ପଢି ସେ ଆସିଥାନ୍ତି ଦେଖିବାକୁ । ସାଥୀଥିଲେ ବିଧାୟକ ଶ୍ରୀ ବିଧାୟକ ପ୍ରଧାନ । ସେଦିନ ଥିଲା ଅଗଷ୍ଟ ୧୪ ତାରିଖ । ମୋତେ ଅଫିସରେ ପାଇଲେ । କେତେ ବ୍ୟସ୍ତ ହେଲେ ମୋ ସ୍ୱାସ୍ଥ୍ୟ ନେଇ । ମଙ୍ଗଳ କାମନା କଲେ । ଏହି ମମତା ବୋଧ ଆଜି ଆଉ ମିଳୁନାହିଁ । କାହାପାଖକୁ ଗଲେ କାମର ବରାଦ- ବିପଦ ବେଳରେ ପାଖରେ ଠିଆ ହେବାର ନେତୃତ୍ୱ ଆଜି ମରିଯାଉଛି । ଶେଷ ଦେଖାହୁଏ ଜୁନ ୨୬ ତାରିଖ ଦିନ ତାଙ୍କ ଭୁବନେଶ୍ୱର ବାସଭବନରେ । ସେଠାରେ ଥିଲେ ଭଉଣୀ ଶ୍ରୀମତୀ ଶୈଳ ବେହେରା । ଚିର ନମସ୍ୟ ସ୍ୱର୍ଗତ ଶରତ ପଟ୍ଟନାୟକଙ୍କ ସ୍ମୃତି ପଖାଲି ଲେଖାଟିଏ ଦେବା ପାଇଁ ଅନୁରୋଧ କରିଥିଲୁ । ଅନୁଭୂତିରୁ ବହୁ କଥା କହିଥିଲେ । ଖାଇବାକୁ ଦେଲେ । ବହୁ ମନ ଖୋଲା କଥା । ଲେଖି ବସିଲେ ସରିବ ନାହିଁ ।

ଖଟିଖିଆ ମେହନତି ଜନତାର ତ ସଂଗ୍ରାମ ସରିନାହିଁ । ଏହି ସଂଗ୍ରାମ ଭିତରେ କଃ ସଦାନନ୍ଦ ମହାନ୍ତି ପ୍ରତିଟି ମୁହୂର୍ତ୍ତରେ ମନେପଡିବେ । ତାଙ୍କର ଅନ୍ୟତମ ଅନ୍ତରଙ୍ଗ ବନ୍ଧୁ କମ୍ୟୁନିଷ୍ଟ ନେତା ଶ୍ରୀ ପ୍ରବିର ପାଲିତ ସେଦିନ ଭଗବତୀ ଭବନରେ ଶ୍ରଦ୍ଧାଞ୍ଜଳି ନିବେଦନ କରୁଥିବା ବେଳେ କହୁଥିଲେ "ସଦାନନ୍ଦ ବାବୁଙ୍କର ସାଥୀ, ବନ୍ଧୁ, ଶୁଭେଚ୍ଛୁ ଓ ସହକର୍ମୀମାନଙ୍କ ପ୍ରତି ଯେଉଁ ମମତା ବୋଧ ଓ ଦରଦ ଥିଲା ତାହା କ୍ୱଚିତ୍ ଦେଖିବାକୁ ମିଳେ । ଦଳର ଗଣ୍ଡି ଭିତରେ ସୀମିତ ନ ରହି ବାହାରେ ବନ୍ଧୁତ୍ୱର ଏକ ବିରାଟ ବଳୟ ସୃଷ୍ଟି କରିପାରିଥିଲେ ।"

ଓଡିଶାର କ୍ଷେତବାଡିରେ, କଳକାରଖାନାରେ ସର୍ବୋପରି ମେହେନତି ଜନତାର ପ୍ରତିଟି ସଂଗ୍ରାମରେ ସଦାନନ୍ଦ ବାବୁ ପ୍ରେରଣାର ଉତ୍ସ ହୋଇ ରହିବେ ।

# ଶୋକବାର୍ତ୍ତା

ବ୍ରଜମୋହନ ମହାନ୍ତି

ସଦାନନ୍ଦବାବୁ ଆଉ ଆମ ଭିତରେ ନାହାନ୍ତି , ତାହା ବିଶ୍ୱାସ କରି ହେଉନାହିଁ । ତାଙ୍କ ମୃତ୍ୟୁର ତିନି ଚାରି ଦିନ ପୂର୍ବରୁ ମୁଁ ତାଙ୍କୁ ଭୁବନେଶ୍ୱର ଡାକ୍ତରଖାନାରେ ଦେଖିବାକୁ ଯାଇଥିଲି । ତାଙ୍କୁ ଗୋଟିଏ ଚମ୍ପା ଫୁଲ ବଢ଼ାଇଦେଲି । ତାଙ୍କର ହସହସ ମୁହଁ ଓ ତାଙ୍କର ସ୍ୱଭାବ ସୁଲଭ ରୀତିରେ ସେ ଯେପରି କଥାବାର୍ତ୍ତା କଲେ, ସେଥିରେ କେହି ବିଶ୍ୱାସ କରିବ ନାହିଁ ଯେ କାଳ ତାଙ୍କର ଏତେ ନିକଟରେ ଉପସ୍ଥିତ ହୋଇଯାଇଛି । ଅସ୍ୱସ୍ତି ଓ ଯନ୍ତ୍ରଣା ତାଙ୍କୁ ଯେପରି ସ୍ପର୍ଶ କରୁ ନଥାଏ । ଜୀବନ ତାଙ୍କ ପାଇଁ ସତ୍ୟଥିଲା । ମୃତ୍ୟୁକୁ ସେ ପରିହାସ କରୁଥିଲେ । ରବୀନ୍ଦ୍ର ନାଥ ଠାକୁରଙ୍କ "ହତଭାଗ୍ୟର ଗାନ" କବିତାର ଗୋଟିଏ ଦୁଇଟି ଧାଡ଼ି ମନେ ପଡୁଛି :

> "ରିକ୍ତ ଯାରା ସର୍ବଜୟୀ ବିଶ୍ୱେ ତାରା
> ଗର୍ବମୟୀ ଭାଗ୍ୟଦେବୀର ନୟେନ୍ ତାରା କ୍ରୀତଦାସ
> ହାସ୍ୟମୁଖେ ଅଦୃଷ୍ଟେର କରିବ ମୋରା ପରିହାସ ।"

ସେ ସର୍ବହରା ଓ ସର୍ବହରା ଆନ୍ଦୋଳନର ଶୀର୍ଷ ସ୍ଥାନରେ ରହି ବିଶ୍ୱର ସର୍ବଜୟୀ ହୋଇଥିଲେ ଏବଂ ଅଦୃଷ୍ଟକୁ ଉପହାସ କରି ଯାଇଛନ୍ତି ।

ସେ ବିଧାନସଭା ଥିଲା ବେଳେ ତାଙ୍କ ସହିତ ମୋର ଘନିଷ୍ଠତା ବଢ଼େ । ବିଧାନସଭାରେ ଚର୍ଚ୍ଚା ଆଲୋଚନାରେ ସେ ଅଗ୍ରଣୀ ଥିଲେ । ତାଙ୍କ ଆଲୋଚନା ସବୁବେଳେ ପ୍ରାଣବନ୍ତ ଥିଲା । ତାଙ୍କ ମାଧ୍ୟମରେ ଯେପରି ଯନ୍ତ୍ରଣାଗ୍ରସ୍ତ ସମାଜର ବ୍ୟାକୁଳ କ୍ରନ୍ଦନ ପ୍ରକଟିତ ହେଉଥାଏ । ସର୍ବଦା ମୌଳିକ ସମସ୍ୟା ଗୁଡ଼ିକୁ ସାହସର ସହିତ ଉପସ୍ଥାପିତ କରୁଥିଲେ । ଅଯଥା ଚର୍ଚ୍ଚା ଆଲୋଚନା କରି ଗୃହକୁ ଭାରାକ୍ରାନ୍ତ କରୁ ନଥିଲେ । ସେ କମ୍ୟୁନିଷ୍ଟ ଦଳର ପ୍ରତିନିଧିତ୍ୱ କରୁଥିଲେ, କିନ୍ତୁ ଗଣତାନ୍ତ୍ରିକ ବାତାବରଣକୁ ସୁସ୍ଥ ଓ ସ୍ୱଚ୍ଛଳ କରିବାରେ ବିଧାନସଭାରେ ତାଙ୍କ ଅବଦାନ ସବୁବେଳେ ସ୍ମରଣୀୟ ହୋଇରହିବ ।

ସଦାନନ୍ଦବାବୁଙ୍କ ଜୀବନଯାତ୍ରା ସମ୍ପର୍କରେ ବିଚାର କଲେ ସେତେବେଳର ସମାଜର ପରିବେଶ ପ୍ରତି ନଜର ରଖିବାକୁ ହେବ । ସେ ସମୟରେ ସାମନ୍ତବାଦୀ ଶୋଷଣରେ ଯେଉଁମାନେ ତ୍ରସ୍ତସନ୍ତ୍ର ହେଉଥିଲେ, ସେହି ଅବହେଳିତ ଶ୍ରେଣୀର ମୁଖପାତ୍ର ଥିଲେ ସଦାନନ୍ଦବାବୁ । ସାମନ୍ତବାଦ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ତାଙ୍କ ରାଜନୈତିକ ଚରିତ୍ରର ବିଶେଷତ୍ୱ ଥିଲା । ସାମନ୍ତବାଦର ଦୁର୍ଗ ଯଦି ଆଜି ଭୁସୁଡ଼ି ପଡ଼ିଥାଏ, ସେଥିପାଇଁ ସଦାନନ୍ଦବାବୁଙ୍କ ଭୂମିକା କମ୍ ନଥିଲା । ସେ ଏ ସଂଗ୍ରାମରେ କେବେ ସାଲିସ୍ କରିଥିବା ଶୁଣାଯାଇ ନାହିଁ ।

ସଦାନନ୍ଦବାବୁଙ୍କ ଦେହାନ୍ତ ବ୍ୟକ୍ତିଗତ ବିଷାଦର ଛାୟା ଖେଳାଇଦେଇଛି । କିନ୍ତୁ ସାମଗ୍ରିକ ଜୀବନରେ ଯେଉଁ ଶୂନ୍ୟତା ସୃଷ୍ଟି ହୋଇଛି, ତାହା ତାତ୍ପର୍ଯ୍ୟପୂର୍ଣ୍ଣ । ତାଙ୍କ ରାଜନୈତିକ ଜୀବନରେ ଯେଉଁ ଦେଶସେବା, ଦେଶାତ୍ମବୋଧ, ତ୍ୟାଗନିଷ୍ଠ ଆଦର୍ଶ ପ୍ରତି ସମର୍ପଣ ଓ ସମାଜରେ ପରିବର୍ତ୍ତନ ସ୍ରୋତକୁ ଦ୍ରୁତଗାମୀ କରାଇବାର ସଂକଳ୍ପ ଆମେ ଦେଖିଥିଲୁ, ତାହାକୁ ଉଜ୍ଜୀବିତ କରି ରଖିବାର ଆହ୍ୱାନ ସେ ଦେଇ ଯାଇଛନ୍ତି । ତାଙ୍କ ଜୀବନର ବାର୍ତ୍ତା ଭବିଷ୍ୟତକୁ ନିଶ୍ଚିତ ପ୍ରଭାବିତ କରିବ, ଏଥିରେ ସନ୍ଦେହ ନାହିଁ । ଅନନ୍ତ ଜାଗିବ, କିନ୍ତୁ ଜୀବନର ଅକ୍ଷୟ ତୂଣୀରକୁ ସେ ଯେପରି ବହନ କରିଥିଲେ, ତାହାକୁ କ୍ଷୟ ହେବାକୁ ନ ଦେବା ତାଙ୍କ ପ୍ରତି ଶ୍ରେଷ୍ଠ ସମ୍ମାନ ହେବ ।

ମୁଁ ସାଥୀ ସଦାନନ୍ଦବାବୁଙ୍କ ଅମର ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରି ରହୁଛି ।

ପୂର୍ବତନ ପାର୍ଲାମେଣ୍ଟ ସଦସ୍ୟ
୨୮ ଅଶୋକନଗର
ଭୁବନେଶ୍ୱର

# ରାଜନୈତିକ ଖେଳଓ୍ଵାର୍ଡ ସଦାନନ୍ଦ ମହାନ୍ତି

ଗିରିଜା ଭୂଷଣ ପଟ୍ଟନାୟକ

ସଦାନନ୍ଦ ବାବୁ କେଉଁ ଦିନ ଚାଲିଗଲେଟି ? ସେତ ଗଲା ଭଳି ଲାଗୁ ନାହିଁ । କାରଣ ତାଙ୍କ ସାଙ୍ଗରେ ଗଲା କେତେବର୍ଷ ହେଲା ଭେଟ ହୁଏ କେବେକେବେ ଅକସ୍ମାତ । କେବେ ସେ ଆସନ୍ତ ଝଡ ପରି । ଚାରି ପଟେ ଥରିଲା ପରି ମନେ ହୁଏ । ତାଙ୍କ ଦୃପ୍ତ କଣ୍ଠରେ, ହସରେ, କିନ୍ତୁ ପ୍ରଣ ଛୁଆଁ ଶବ୍ଦ । ବାଟୁଳି ବାଜିବା ପରି ବାଜିବ, ନରମି ଯିବ । ସେଇ ଯୋଗୁ ସେ ଆଉ ନାହାନ୍ତି ବୋଲି ମନେ ହେଉନି । ମନେ ହେଉଛି ସେ ଯେମିତି ଅଛନ୍ତି । ଯାଇଛନ୍ତି କୁଆଡେ ଦୂର ଯାଗାକୁ ମସ୍କୋ, ବର୍ଲିନ୍, ପ୍ରାଗ୍ (କିନ୍ତୁ ସେ କେନ୍ଦ୍ର ସବୁବି ଭାଜି ଗଲାଣି) ସେ ପୁଣି ଆସିବେନି । କିନ୍ତୁ ସେ ଆଉ ଫେରିବେ ନାହିଁ । ଏଇ କଥାଟା ଭାବିଲା ବେଳକୁ ଛାତିଟାରେ କିମିତି ଚଟ୍‌କିନା ଲାଗି ଯାଏ । ସେଇ ରାତିରେ ଡାକ୍ତରଖାନା ଫେରିଲା ପରେ ମୋ ନିଜ ରୋଗଟା ଯେମିତି ମୋତେ ଗ୍ରାସ କରିଯିବ, ସେମିତି ମନେ ହେଲା । ସେଇ ଭିତରେ ଲେଖିଥିଲି ଶ୍ରଦ୍ଧାଞ୍ଜଳି, ସମାଜ ପାଇଁ, ସମ୍ବାଦ ପାଇଁ । ପ୍ରକାଶ ପାଇ ନାହିଁ । ପାଇବ ବୋଧହୁଏ ଦଶାହ ଦିନ । ସଦାନନ୍ଦ ମହାନ୍ତିଙ୍କର ପୁଣି ଦଶାହ କଣ ? ମନେ ପଡୁଛି ଯୌବନର ଆଦ୍ୟ ଦିନ ସବୁ । ବସ୍ତୁବାଦୀ ଦର୍ଶନର ନିଗୁଢ଼ ତତ୍ତ୍ଵ । ବିଜୟ ବାବୁ (ଦାସ) ଆଉ ନାହାନ୍ତି । ହରିବନ୍ଧୁ ବାବୁ (ବେହେରା) ବି ଗଲେଣି । ଏଇ ସଦାନନ୍ଦ ବାବୁ ଗଲେ । ବସ୍ତୁବାଦୀ ଦର୍ଶନର ପ୍ରବକ୍ତା ବାବୁଙ୍କର ପୁଣି ଦଶାହ କଣ ? କିନ୍ତୁ ସବୁ ପରମ୍ପରାକୁ ଏଡାଇ ଦେଇ ଯାଇ ହେବ ନାହିଁ । ସଦାନନ୍ଦ ବାବୁଙ୍କର ମର ଦେହକୁତ ପୁଣି ସ୍ଵର୍ଗ ଦ୍ଵାରରେ ପୋତା ହେବାକୁ ଗଲା । ମୁଁ "ରେନିଗେଡ" ହୋଇ ସାରିଲା ପରେ ଯେଉଁ କେତେ ଜଣ ପୂର୍ବକ ସହଯୋଦ୍ଧା ଏଇ ବିଶେଷଣକୁ ଗ୍ରହଣ କରି ନଥିଲେ ଅନ୍ୟତମ ରାଜନୈତିକ ଗୁରୁମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ । ୧୯୪୫ ମସିହାରୁ ୧୯୯୧ ମସିହା ପର୍ଯ୍ୟନ୍ତ କିଛି କମ୍ ବାଟ ନୁହେଁ । ସେଇ ଯୋଗ ଉଭୟଙ୍କର ଉଭୟଙ୍କ ପ୍ରତି ଦରଦ ଥିଲା କିଛି କିଛି । ସେଇ ଯୋଗୁ ଉଭୟ ନନ୍ଦିନୀ ଦେବୀ ଓ ସଦାନନ୍ଦ ବାବୁ ଭୁବନେଶ୍ଵର ଡାକ୍ତରଖାନାରେ ଅଛନ୍ତି ଖବର ପାଇ ଗଲା ବେଳକୁ ଶୁଣିଲିଯେ ସଦାନନ୍ଦ ବାବୁ ଆସିଲେଣି କଟକ ବଡ ଡାକ୍ତରଖାନାକୁ । ଘରେ ଆସି ଶୁଣିଲି ରାଜୁ ପାଣିଗ୍ରାହି କହି ଯାଇଛନ୍ତି, ବନ୍ଧୁ ନରସିଂହ ତ୍ରିପାଠୀ ଫୋନ୍ କରିଛନ୍ତିଯେ ସଦାନନ୍ଦ ବାବୁ ପାରିବାରିକ ବନ୍ଧୁ, ପଡୋଶୀ ଡାକ୍ତର ସବ୍ୟସାଚୀ ଦାସଙ୍କ ଓ୍ଵାର୍ଡରେ ।

୧୯୪୫ ମସିହା । ବ୍ରିଟିଶ୍ ସାମ୍ରାଜ୍ୟବାଦ ଯିବା ବେଳ ପାଖେଇ ଆସିଲାଣି । କିନ୍ତୁ ବର୍ତ୍ତମାନ କାଳି ଅନ୍ଧାର । ନିବୁଜ ନିବିଡ ଟେଷ୍ଟ ପରୀକ୍ଷାରେ ଡିକଟେନ୍‌ସନ୍ ପ୍ରଥା ମାକାଲେ ସାହେବଙ୍କ ଦ୍ଵାରା ପ୍ରଚଳିତ ପ୍ରଥା । ଏହାକୁ ଲୋପ କରିବାକୁ ହେବ । ସମଗ୍ର ଗଞ୍ଜାମ ଜିଲ୍ଲାରେ ଛାତ୍ର ଆନ୍ଦୋଳନର ଜୁଆର । ସଦାନନ୍ଦ ମହାନ୍ତି ତାଙ୍କର ସହଯୋଦ୍ଧାମାନଙ୍କ ସହିତ ବୁଲନ୍ତି ସ୍କୁଲରୁ ସ୍କୁଲ । ତାଙ୍କର ଭାଷଣ ଠାଣି ଏବଂ ବିଷୟ ବସ୍ତୁ ଶ୍ରୋତାମାନଙ୍କୁ ମୁଗ୍ଧ କରେ । ଆଡ୍‌ଭୋକେଟ୍ ବି.ଜେ.ପି. ନେତା ବିପିନ ବିହାରି ରଥ ଆଖିରୁ ଲୁହ ପୋଛୁଛନ୍ତି । ରେଡିଓ ଟିଭିରେ ତୁରନ୍ତ ସମ୍ବାଦ ଦେଇ ଡାକ୍ତରଖାନାରେ ପହଞ୍ଚିଲା ବେଳକୁ ସଦାନନ୍ଦ ବାବୁଙ୍କର ମର ଦେହକୁ ନେଇ ବନ୍ଧୁମାନେ ଗଲେଣି ଚାଲି ଭୁବନେଶ୍ଵର । ବିପିନ ବିହାରୀ ଲୁହ ପୋଛି ପଖାଳୁଛନ୍ତି ସେଇ ଦିନ ଗୁଡିକୁ । ସଦାନନ୍ଦ ମହାନ୍ତି ପାଠ ପଢୁଥିଲେ ଖଲ୍ଲିକୋଟ କଲେଜରେ । ପ୍ରତାପରେ ତାଙ୍କର ଥରହର ଡାକୁଥିଲା କଲେଜ । ମନେ ପଡୁଛି ଏକ ନ୍ୟାୟୋଚିତ ପିଲା ବଞ୍ଚିତ ହୋଇଥାଏ ନାମ ଲେଖାଇବାରୁ । ସେଇଟା ଷଷ୍ଠ ଦଶକର କଥା ହେଲାଣି । ସଦାନନ୍ଦ ବାବୁ ପୋଖତ ନେତା ହୋଇ ସାରିଲେଣି । ତାଙ୍କର ତତ୍‌କାଳୀନ ଶିକ୍ଷକ କିନ୍ତୁ ବର୍ତ୍ତମାନର ପ୍ରିନ୍ସପାଲ । ପାଢୀଙ୍କୁ ସଦାନନ୍ଦ ବାବୁ ଭେଟିଲେ । ଆରମ୍ଭ ହେଲା କଥୋପକଥନ, 'ମାଷ୍ଟ୍ରେ ମୁଁ ସେମିତି ଟମକୁ ଅଛି ଏକା । ଏ କାମ ନ୍ୟାୟର କାମ । କାଲିକି ହେବାର ଅଛି, ମୁଁ ଯାଉଛି । କାହିଁକି ଆସିବି', ସଦାନନ୍ଦ ମହାନ୍ତି ଗେଟ୍ ଟପି ସାରି ନାହାନ୍ତି, ନାମ ଲେଖା ହୋଇ ଗଲାଣି । ସେଇ କଲେଜର ହତା ଆରପଟେ ସଦାନନ୍ଦ ବାବୁଙ୍କର ସବୁଠାରୁ ପ୍ରିୟ ଯୋଦ୍ଧା ଲକ୍ଷ୍ମଣ ମହାପାତ୍ରଙ୍କୁ ଦିବାଲୋକରେ ହତ୍ୟା କରାଗଲା । ସମୟ କିମିତି ବଦଳି ଗଲା ଏହା ତାହାର ଏକ ପ୍ରମାଣ ।

ସଦାନନ୍ଦ ମହାନ୍ତିଙ୍କର ପୋଥି ବନ୍ଧା ହୋଇଥିଲା କଲେଜରେ, କିନ୍ତୁ ନୂଆ ପୋଥି ଖୋଲିଥିଲା ପୁରପଲ୍ଲୀରେ କାରଖାନା ଖଦାନ୍‌ରେ । ଜୀବନର ନୂଆ ପୋଥି ପଢିବାକୁ ଆରମ୍ଭ କଲେ ସଦାନନ୍ଦ ବାବୁ । ଫେରି ଅନଇେ ନଥିଲେ ଅନକେ ଦିନ ଧରି । କଠୋର ସଂଗ୍ରାମ, ଅନଶନ, ଲାଠି ମାଡ, ଭୋକ, ଉପବାସ, ଦାରିଦ୍ର୍ୟ ସବୁ ସହିଛନ୍ତି । ଘରର ଘରଣୀ ସେ ବନ୍ଧୁଙ୍କୁ କାଚ ବିକି ପାଠ ପଢେଇଛନ୍ତି କଟକରେ । ଓକିଲାତି ପଢି ସେ ଫେରିବ ଏବଂ ଦୁଃଖୀରଙ୍କାଙ୍କ ମକଦ୍ଦମା ଲଢିବ । ଆପଣାର ବନ୍ଧୁମାନଙ୍କ ପାଇଁ ଉଷ୍ମତା ଭରି ରହିଥିଲା ତାଙ୍କ ହୃଦୟରେ । ସ୍ଵାଧୀନତା ଆସିଲା । କିନ୍ତୁ ଏ ଆଜାଦୀ ଝୁଟା ହେର ସ୍ଲୋଗାନ୍ ବହନ କରି ଚାଲିଲେ ସଦାନନ୍ଦ ବାବୁ ସତରେ ଏ ସ୍ଵାଧୀନତା କାହା ପାଇଁ, କଣ ମିଳିଛି ଏଇ ସ୍ଵାଧୀନତାରୁ ? ବହୁ ବର୍ଷ ପରେ ଠିକ୍ ସେଇ କଥାର ମର୍ମ କହିଲେ ଜୟପ୍ରକାଶ । କିନ୍ତୁ ସେତେବେଳକୁ ମହାନଦୀରେ ଅନେକ ପାଣି ବହି ଗଲାଣି । କିଛି ଦିନ ପାଇଁ 'ଏ ଆଜାଦୀ ଝୁଟା ହେ'ର ବାଦକମାନେ ଜୟପ୍ରକାଶଙ୍କୁ ଫାସିଷ୍ଟ ବୋଲି କହିଲେ । ଇତିହାସରେ ଇମିତି ଆଇରନି ମଧ୍ୟ ଦେଖା ଯାଏ । ସଦାନନ୍ଦ ବାବୁଙ୍କର ପ୍ରତିଭା ବିକଶିତ ହୋଇଥିଲା ଦୁଇଟି ଦିଗରେ-ବକ୍ତୃତା ଦେବାର ପ୍ରଣାଳୀ ଏବଂ ଗାଣିତିକ ଯୁକ୍ତି ।

ଛାତ୍ର ସଂଘର ସେ ଯେମିତି ନେତା ଥିଲେ କମ୍ୟୁନିଷ୍ଟ ପାର୍ଟି ମଧ୍ୟରେ ବି ସେଇ ପରି ସେ ନେତୃତ୍ୱକୁ ଯାଇଥିଲେ । ଦୁଇଥର ସେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଓଡିଶା ଶାଖାର ସମ୍ପାଦକ ହୋଇଛନ୍ତି । ହେଲା ବେଳେ ସଙ୍କଟ ଦେଖା ଦେଇଛି ଏବଂ ତାରି ଭିତରୁ ତାଙ୍କର ପାର୍ଟିକୁ ରକ୍ଷା କରିବାର ଦାୟିତ୍ୱ ପଡିଛି ତାଙ୍କ ଉପରେ ।

ସଦାନନ୍ଦ ମହାନ୍ତି ଓସ୍ତାଦ ଖେଳବାଡ଼ି । ସେ ଆପଣା ଶିବିରର ଶକ୍ତି ଯେମିତି କଳାନା କରି ଜାଣୁଥିଲେ ଅପର ପକ୍ଷର ଶକ୍ତିକୁ ମଧ୍ୟ ସେମିତି କଳନା କରି ପଶାପାଲିର କାଠି ଗଡାଇ ପାରୁଥିଲେ । ସେଇଥି ଯୋଗୁ ରାଜନୈତିକ ଏବଂ ଶାସନ କଳ ଭିତରେ ତାଙ୍କର ଖ୍ୟାତି ଥିଲା ଏକଦା ଅପରିସୀମ । ଅନେକ ପ୍ରତିଷ୍ଠିତ ମାନଙ୍କୁ ମୁଁ ଦେଖିଛି ତାଙ୍କ ପାଖରେ କୁର୍ଣ୍ଣିସ୍ କରାବାର, ଖିଦମତ୍ କରିବାର, ଝିଅ ବିବାହରେ କଫିସର୍କୁଲେଟର ଚଳାଇବାର । ସେମାନେତ ଅପେକ୍ଷା କରନ୍ତି ରାଜନୈତିକ ବଜାରରେ କାହାର ଭାଉ କେତେ, ମୁଖ୍ୟମନ୍ତ୍ରୀ କହାକୁ ଅନେଇ ହସିଲେ । କାହକୁ ଦେଖି ନମସ୍କାର ହେଲେ, କାହାକୁ ଦେଖି କୁଣ୍ଡାଇ ପକାଇଲେ ଆଉ ତା'ପରେ ଚାଲିଲାତାଙ୍କର ନାମ ।

ସମୟ ସବୁବେଳେ ସମାନ ଯାଏ ନାହି । ସବୁ ସହଯୋଦ୍ଧା ସମାନ ନୁହନ୍ତି । ଆଉ ଅର୍ଥ ହେଉଛି ସବୁ ଅନର୍ଥର ମୂଳ । ସେଇ ଯୋଗୁ ବନ୍ଧୁ ଶତ୍ରୁ ପାଲଟନ୍ତି । ସଦାନନ୍ଦ ବାବୁଙ୍କର ଦେହ ଖରାପ ହେଲାଣି ବହୁ କାଳରୁ । ବହୁମୂତ୍ର ଏବଂ ରକ୍ତଚାପ, ଗ୍ରାସ କରିଛି ଦେହକୁ । ସେଥ ପ୍ରତି ନଜର ନଥିଲା । ମହା ପ୍ରବାହ ବହୁଛି । ତେଣୁ କାହାକୁ ଖାତିର, ରୋଗ କ୍ରମଶଃ ବେଶି ଗ୍ରାସ କରି ଯାଉଛି ଦେହକୁ । ଗୋଟିକ ପରେ ଗୋଟିଏ ରୋଗ । କଟକରୁ କଲିକତା, ଦିଲ୍ଲୀ, ମସ୍କୋ ଚିକିତ୍ସା ପାଇଁ । କିନ୍ତୁ କଣ ହେବ ? ଏଣିକି ସାବଧାନ ହେବାକୁ ହେବ । ସାବଧାନ । ଜୀବନରେ ଯିଏ କୌଣସି ସାବଧାନୀକୁ ଶୁଣି ନାଇଁ, ଖାତିର କରି ନାଇଁ, ସିଏ ଶୁଣିବ ଏଇ ସାବଧାନୀକୁ ।

ଜଣେ ବିଶିଷ୍ଟ ପୋଲିସ୍ ଅଫିସର ଆମ ଦୁଇ ଜଣଙ୍କ ବନ୍ଧୁ । ସେ ସଦାନନ୍ଦ ବାବୁଙ୍କ ପରଲୋକ ସମ୍ବାଦ ପାଇ ଏବଂ ମୋର ଅସୁସ୍ଥତା ଖବର ପାଇ ଆସିଥିଲେ ସଂଖୋଳିବା ପାଇଁ । ସେ କହିଲେ ଯେ ସେ ଅମୁକ ନେତା ପାର୍ଟି ବିରୋଧୀ କାମ କରୁଛି ବୋଲି ତାକୁ ନେଇ ସଦାନନ୍ଦ ବାବୁଙ୍କର କଣ ଯିବା ଦରକାର ଥିଲା ତପ୍ତପାଣି ଏବଂ ସେଠାରେ ବିନା ମଶାରୀରେ ଶୋଇ ଏଇ ମ୍ୟାଲେରିଆ ବରଣ କରିବା । ସଦାନନ୍ଦ ବାବୁ ତପ୍ତପାଣି ଯାଇଥିଲେ ଏବଂ ସେଠାରୁ ମ୍ୟାଲେରିଆ ନେଇ ଫେରିଥିଲେ ଏକଥା ସେଦିନ କଟକ ବଡ ଡାକ୍ତରଖାନାରେ କହୁଥିଲେ । କିନ୍ତୁ କାହିଁକି ଯାଇଥିଲେ ତାହାତ କେହି ପଚାରି ନାହୁଁ ବା ସେ କହି ନାହାନ୍ତି । ଖେଳବାଡର ପଶାକାଠି ଆଉ ବୋଲ ମାନୁ ନାହିଁ ବୋଲି ସେ କଣ ଜାଣି ନାହାନ୍ତି ?

ଖେଳାଳି ଦିନେ ଦକ୍ଷ ଖେଳାଳି ଥିଲେ । ଯାହା ଡାକୁ ଥିଲେ କାଠି ସେଇଆ ଗଡୁଥିଲା । ସେମାନେ କୁର୍ଣ୍ଣିସ୍ କରୁଥିଲେ, ଅନ୍ୟମାନେ ସମ୍ମାନ ଦେଉଥିଲେ । କିନ୍ତୁ ଆଉ ଖେଳାଳି ଫର୍ମରେ ନାହାନ୍ତି । ତେଣୁ ଦରକାର ଥିଲା ଯିବାର ? କିନ୍ତୁ କହିବ କିଏ ?

ଜଣେ ଉଚ୍ଚ ପଦସ୍ଥ ଅଫିସରଙ୍କ ପାଖରେ ବସିଥିଲି । ଉକ୍ତ ଅଫିସର ତାଙ୍କର ଛତ୍ରାଦସ୍ଥରେ ଆମର ପାଖାପାଖି ଥିଲେ । ସେଠାରେ ଏକ ସ୍ଲିପ୍ ପହଞ୍ଚିଲା ପିଅନ୍ ହାତରେ ଆଁପୁଡା ଆଁପୁଡା ଅକ୍ଷରରେ ଲେଖା ହୋଇଛି, ସଦାନନ୍ଦ, କମ୍ୟୁନିଷ୍ଟ । ଉକ୍ତ ଅଫିସର ହସିଲେ ଏବଂ ଡାକିଲେ ତାଙ୍କୁ । ଆଜ୍ଞା, ପ୍ରଥମରୁ ପଚାରିବି । ଏଇଟା କଣ ଆପଣଙ୍କ ସାଂଗିଆ ? ଉକ୍ତ ଅଫିସର ପଚାରିଲେ । ବୁଝିଲକି ଆଜ୍ଞା । ଆପଣଙ୍କୁ ଲୋକେ କଅଣ ପାଇଁ ସମ୍ମାନ ଦେଖାନ୍ତି । ଏମ୍. ଏ, ଆଇ.ଏ.ଏସ୍ ବୋଲି । ମୋର ମହାପ୍ରଭୁ ସେ ପାଠ ନାହିଁକି ସାଂଗିଆ ନାହିଁ । ଯୋଂଟା ମୋର ସାଂଗିଆ, ଯୋଂଥିରେ ମୋର ପରିଚୟ ସେଇଟା ଲେଖିଦେଲି ନା ମୋର ଆଉ କିଛି ପରିଚୟ ଅଛିକି ?

ସେଇ ଯୋଗୁ କଟକ ବଡ ଡାକ୍ତରଖାନାରେ ତାଙ୍କୁ ପ୍ରଥମ ଦେଖା କଲାକ୍ଷଣି, ଆଗ ତାଙ୍କର ପ୍ରଶ୍ନ । କିଅଣ ଗିରିଜା, ପ୍ରଧାନମନ୍ତ୍ରୀ ଆସିଲା ନାହିଁକି ? ନଆସୁ ବହି ବାହାରିଲାତ ! ସେଇଟା ବଡ କଥାଟେ କଲ । ଜଷ୍ଟିସ୍ ମହାପାତ୍ରଙ୍କୁ ନମସ୍କାର କହି ଦେବୁ ଏବଂ କହିବୁ ମୋତେ ସେ ବହି ପଢିବାକୁ ପଠେଇବେ । ମୁଁ ଫେରାଇ ଦେବି ସିଓର । ଆଖରେ ଲୁହ ଜକାଇ ଆସେ । ସେ ଏ ବହି ଆଉ ପଢି ପାରିବେ ନାହିଁ । ସଦାନନ୍ଦ ମହାନ୍ତି ରହି ଯାଇଥିଲେ ଆଲର୍ଟ । ସତେ ଶେଷ ଦିନଟି ତାଙ୍କ ପାଇଁ ଥିଲା ସଙ୍କଟମୟ । ସେଇଦିନ ତାଙ୍କର ଆଉ ହୋସ୍ ରହିଲା ନାହିଁ । ସେ ଭୁଲି ଗଲେ ସମସ୍ତଙ୍କୁ ।

ଭୁବନେଶ୍ୱର ଫେରି ଡାକ୍ତର ସବ୍ୟସାଚୀ ଦାସଙ୍କ ସହିତ କଥାବାର୍ତ୍ତା ହେଲି । ସେ କହିଲେ ରକ୍ତରେ ସୁଗାର ବୋଲ ମାନୁନି । ତାଙ୍କର ହାର୍ଟ ଖରାପ ଅଛି ଆଗରୁ । ତେଣୁ ସେ ଖାଲି କୁଇନାଇନ୍ ଖାଇ ପାରିବେ ନାହିଁ । ଗ୍ଲୁକୋଜ ସହ କୁଇନାଇନ୍ ଖାଇଦେଲେ ଏଣେ ବ୍ଲଡ୍ ସୁଗାର ବଢି ଯାଉଛି । କଥା ହେଲୁ ଆମେ ଦୁହେଁ ସଙ୍ଗ ହୋଇ ଯିବୁ ଡାକ୍ତରଖାନା । ମୁଁ ଆସିଲି ୟୁନିଭର୍ସିଟିକୁ । ଆସିଲା ବେଳକୁ ଟେଲିଫୋନ୍ ବାଜୁଛି । ଟେଲିଫୋନ୍ କରୁଛନ୍ତି ଶୈଳ ବେହେରା । ସଦାନନ୍ଦ ବାବୁ ଆଉ ନାହାନ୍ତି । ତାହା ସହିତ ଏକ କାମର ବରାଦ କଲେ, ଯାହାକୁ ନାହିଁ କରିବା ମୋ ପକ୍ଷେ ସମ୍ଭବ ନଥିଲା । କିନ୍ତୁ କାମ ପୂରଣ ପାଇଁ ହାତରେ ସମୟ କମ୍ । ସେତେବେଳକୁ ଓଡିଆ ସମ୍ବାଦ ପଢା ଆରମ୍ଭ ହୋଇଗଲାଣି । ଟି.ଭି. ସମ୍ବାଦ ସାତଟା ତିରିଶ ମିନିଟ୍‌ରେ । ଧନ୍ୟବାଦ ସେମାନଙ୍କୁ । ଦୁହେଁ ସମ୍ବାଦଟିକୁ ସଙ୍ଗେସଙ୍ଗେ ସମ୍ପ୍ରସାରିତ କରି ଦେଲେ । କିନ୍ତୁ ସଦାନନ୍ଦ ବାବୁଙ୍କୁ ଦେଖିବା ଆଉ ସମ୍ଭବ ହେଲା ନାହିଁ । ଗଲାବେଳକୁ ସେ ଚଲେଣି ଭୁବନେଶ୍ୱର । ମୋର ଯିବା ସମ୍ଭବ ହେଲା ନାହିଁ କାରଣ ରୋଗ ଗ୍ରାସ କରି ଆସିଲାଣି ସେତେବେଳକୁ ।

ସଦାନନ୍ଦ ବାବୁ ଥିଲେ ଖେଳବାଡ । ସୁଦକ୍ଷ ଖେଳବାଡ । କିନ୍ତୁ ସବୁ ବେଳେ ସବୁ କଥା ସମାନତ ନଥାଏ । ବହୁ ମହାଗଣଙ୍କର ଗଣନା ଭୁଲ ହୋଇ ଯାଏ । ଖଡି ଗୋଟାକି ଗଡି ଯାଏ । ସବୁ ଗଣା ଭୁଲ ହେବା ସତ୍ତ୍ୱେ ଖେଳବାଡ

ଗିଟାଯାର୍ଡ କରେ ନାହିଁ । ସଦାନନ୍ଦ ବାବୁଙ୍କର ସେଇ ସମୟ ପ୍ରାୟ ଆସି ଯାଇଥିଲା । ତାପରେ ତାଙ୍କର ଆଉ ଆବଶ୍ୟକତା କଣ ଥିଲା ରହିବାର ? ଜୀବନ ଯଦି ଏକ ବୃତ୍ତ, ତା' ହେଲେ ସେ ବୃତ୍ତ ହେବା ପାଇଁ ତ ସମୟ ହୋଇ ଯାଇଥିଲା ।

କିନ୍ତୁ ସଦାନନ୍ଦ ବାବୁ ଖେଳବାଡ । ସେ ଜାଣିଥିଲେ ।

When the Great scorer comes
to write against your name.
He writes not whether you won or lost,
but how you plyed the game.

କେତେ ଗୋଲ୍ ତାର ହିସାବ କିଏ ରଖିଛି । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ 'ସଦାନନ୍ଦ କମ୍ୟୁନିଷ୍ଟ' ହୋଇ ରହି ଗଲେ । ପ୍ରତ୍ୟେକ ମଣିଷର ଦୋଷ, ଦୁର୍ବଳତା ଥାଏ । ତାଙ୍କର ବି ଥିଲା । କିନ୍ତୁ ତାଙ୍କର ଅବଦାନ ଆଗରେ ତାହା କେତେ କ୍ଷୀଣ, କେତେ ନଗଣ୍ୟ ? ମନମୋହନ ମିଶ୍ରଙ୍କ କବିତା ମନେ ପଡେ ।

"ଯାହ ହୁଡିବାର ହୁଡିଛୁ ପଥ,
ଅମଡା ମାଡିଛି ଆମରି ରଥ,
ଶକ୍ତି କରିଛୁ କ୍ଷୟ,
ସେଇତ ତୁମରି ଦାନ, ସେଇତ ତୁମରି ଜୟ
ହେ ଲେନିନ୍ ବରାଭୟ"

ପଚାଶ ବର୍ଷରୁ ଉର୍ଦ୍ଧ୍ବ କର୍ମମୟ ଜୀବନରେ ସେ ପଥ ହୁଡିଛନ୍ତି, ଶକ୍ତି କ୍ଷୟ କରିଛନ୍ତି, ଅମଡା ରାସ୍ତା ଯାଇଛନ୍ତି । କିନ୍ତୁ ସେସବୁ ସତ୍ତ୍ୱେ ସଦାନନ୍ଦ ମହାନ୍ତି ହେଉଛନ୍ତି ତାଙ୍କର ସେଇ ମହାନ୍ ନେତା ଲେନିନ୍‌ଙ୍କର ବାଣୀରେ ଉଦ୍‌ବୁଦ୍ଧ, ଅନୁପ୍ରାଣିତ । ସେ ଲେନିନ୍ ଆପଣାର ଜନ୍ମଭୂମି, କର୍ମଭୂମିରେ ଆଜି ଅପମାନିତ, ନିନ୍ଦିତ । ସଦାନନ୍ଦ ମହାନ୍ତିଙ୍କୁ ତାହା ବାଧୁଥିଲା ମହା ପ୍ରବାହର ସ୍ଥିରତାରେ । କିନ୍ତୁ ଉପାୟ କଣ ?

ସଦାନନ୍ଦ ମହାନ୍ତିଙ୍କର ଚିତା ଧୁଧୁ ଜଳୁଛି । ଜୀବନର ଶେଷ ହିସାବ ନିକାଶ । ସବୁ ରହି ଯାଇଛି ପଛରେ । ପ୍ରତିଷ୍ଠା, କୋଠା, ପୁତ୍ର, କନ୍ୟା, ସ୍ତ୍ରୀ, ସହଯୋଦ୍ଧା, ସହକର୍ମୀ ସମସ୍ତେ ରହି ଯାଇଛନ୍ତି ପଛରେ । ଛୁଟି ଚାଲିଛନ୍ତି ସଦାନନ୍ଦ ବାବୁ ଉଲ୍‌କା ପରି ମହାକାଶ କକ୍ଷରେ । ଏକ ବିରାଟ ଆଗ୍ନେୟ ଗିରି ଆଜି ନିର୍ବାପିତ, ସ୍ତବ୍ଧ । ତଥାପି ତାହା ଜଳି ରହିବ ମହାକାଳ ବକ୍ଷରେ ଯୁଗ ଯୁଗ ଧରି ।

ଏଇଠି ଦି' ୟୁନିଭର୍ସରେ ସେ କେତେଥର ଭାଷଣ ଦେଇଛନ୍ତି, କେତେଥର ଏଇଠି ଶୁଣିଛି ଗଭୀର ନୈରାଶ୍ୟରେ ଆଶାର ବାଣୀ, ଆଉ ସେଇଠି ବସି ଲେଖୁଛି ମୁଁ ଶ୍ରଦ୍ଧାଞ୍ଜଳି ତାଙ୍କ ପାଇଁ, ଯିଏ ମୋତେ ଲେଖିବା ପାଇଁ ଅ ଆ ପଢାଇଥିଲେ । ସୂର୍ଯ୍ୟର ଆଲୋକରେ ପ୍ରଜ୍ଜ୍ୱଳିତ ବଳିତାରେ ବନ୍ଦନା କଲା ଭଳି ।

# ସାଥୀ ସଦାନନ୍ଦ : ଏକ ନୂତନ ସମନ୍ୱୟ

**ନନ୍ଦକିଶୋର ପଟ୍ଟନାୟକ**

କିଏ ଭାବିଥିଲା, ନଭେମ୍ବର ୧୩ ହେବ ଜୀବନର ଶେଷ ଦେଖା । ଭୁବନେଶ୍ୱରରୁ କଟକ ଅନ୍ତିମ ଯାତ୍ରା-କଟକ ଭେଷଜ ମହାବିଦ୍ୟାଳୟକୁ । ଏତେ ନିଷ୍ଠୁର ପ୍ରକୃତିର ନିୟମ । ସେଇ ଅନ୍ତିମ ଯାତ୍ରାର ଫେରନ୍ତା ଗସ୍ତ ହେଲା ମରଶରୀର, ଆଉ ଜୀବନ ନୁହେଁ, ଜୀବନ୍ତ ନୁହେଁ, ଫେରେ ୧୬ ସନ୍ଧ୍ୟାରେ ନିଜର ପାର୍ଥିବ ବାସସ୍ଥଳୀକୁ । ହସ ଦେଇ ନୁହଁ, ଫୁଲ ଦେଇ ; ବନ୍ଦନା ନୁହେଁ, କ୍ରନ୍ଦନ ଭିତରେ ଅନ୍ତିମ ଦର୍ଶନ ହେଲା ମାତ୍ର ।

ତାଙ୍କର ପ୍ରିୟ ପତାକା ଲାଲ ପତାକାଟିଏ ତାଙ୍କ ଉପରେ ସ୍ଥାପନ କଲାବେଳେ ସେହି କୋହ, ଦୀର୍ଘ ୪୫ ବର୍ଷର ରକ୍ତ ସମ୍ପର୍କର ଅନ୍ତିମ ପଦସ୍ପର୍ଶ । ସ୍ୱର୍ଗତ ଡାକ୍ତର ଗୋପାଳ ମିତ୍ରଙ୍କୁ କଟକରୁ ଡାକି ଆଣିଥିଲି ତାଙ୍କ ନିକଟକୁ ଅସୁସ୍ଥତାର ପ୍ରଥମ ଧକ୍କାର ନିରାକରଣ ପାଇଁ, ପୁଣି ଆଣିଥିଲି ଡାକ୍ତର ରବୀନ୍ଦ୍ରନାଥ ସାହୁଙ୍କୁ ଭୁବନେଶ୍ୱର ହସ୍ପିଟାଲ୍ ଭିତରେ ଆଶୁ ନିରାକରଣ ପାଇଁ । ପୁଣି ନେଇ ଯାଇଥିଲି ଭୁବନେଶ୍ୱରରୁ କଟକକୁ ଡାକ୍ତର ବାବାଜୀ ପଣ୍ଡାଙ୍କ କରକମଳର ଯାଦୁକରୀ ସ୍ପର୍ଶ ଚିକିତ୍ସା ପାଇଁ । ବନ୍ଧୁ ଡାକ୍ତର ତେଜେଶ୍ୱର ରାଓଙ୍କ ସ୍ନେହ ମମତା ବୋଳା ପରାମର୍ଶ-ଚିକିତ୍ସା ପାଇଁ । ଏମିତି କେତେ ଚିକିତ୍ସା, କେତେ ପ୍ରଚେଷ୍ଟା ସବୁ ଅସଫଳ ହୋଇଗଲା । ଆଜି ଜୀବନର ଶେଷ ସାୟାହ୍ନରେ, ଶେଷ ସନ୍ଧ୍ୟାରେ । ଭାବି ହେଉନାହିଁ । ଏତେ ଅଚାନକ, ଏତେ ଅମାନିଆ ସେଇ ମହାଯାତ୍ରା ।

୧୭ ସକାଳେ-ଭଗବତୀ ଭବନ ପ୍ରାଙ୍ଗଣରେ-ତାଙ୍କରି କୃତ ସୌଧ-ସଦନରେ-ଶେଷ ଦର୍ଶନ । ଶହ ଶହ ବନ୍ଧୁଙ୍କ ଗହଣରେ-ସେଇ ତୀକ୍ଷ୍ଣ ଆଖି ଦୁଇଟି-(ଆଉ) ଅଣଫିଟା ରହିଗଲା । ଦେଖିଲା ନାହିଁ କିଏ ଆସିଛି, ଆସିନି ।

କିଏ ଅଶ୍ରୁ ଢାଳିଲା, କିଏ କୋହ ନିଗାଡ଼ିଲା, କିଏ ସ୍ମୃତିର ଖିଏ ବଖାଣିଲା, କିନ୍ତୁ ସେ ଆଉ ଦେଖିଲାନି । ଜଣକ ପରେ ଜଣେ ବନ୍ଦନା ଗାଇଗଲେ । ବିଦାୟ ଦେଲେ ତାଙ୍କୁ । ସବୁ ଶୁନ୍‌ଶାନ୍ । ଚିର ନୀରବତା । ଆଉ ସେଠି ସେଇ ହସ ଫୁଟିବନି ।

୪୫ ବର୍ଷ ତଳ କଥା-ପ୍ରଥମ ପରିଚୟ, ବ୍ରହ୍ମପୁର ଟାଉନ୍ ହଲ୍‌ରେ । ଛାତ୍ର ସଂଘ ଗଢାହୁଏ । ଯେଉଁ କେତେଜଣ ଉଦ୍ୟୋକ୍ତା ତାଙ୍କ ଭିତରେ ଥିଲେ-ସାଥୀ ସଦାନନ୍ଦ, ଶଶିଭୂଷଣ ପ୍ରମୁଖ ବହୁମୁଖ । ସେହି ପ୍ରଥମ ଦେଖା । କି ଝଲକ ଥିଲା ସେଥିରେ । ଆରମ୍ଭ ହେଲା ନବ୍ୟ ଜୟଯାତ୍ରା । ତେଜୀୟାନ୍ ଛାତ୍ରନେତା ଦୀପ୍ତିମନ୍ତ ଯୁବ ଝଲକ, ତାଂପରେ ଗୁଣ୍ଟୁର ଯାତ୍ରା । ଓଡ଼ିଶାରୁ ବିରାଟ ପ୍ରତିନିଧି ଦଳ-ପୁଅ ଝିଅ କେତେ । କେତେ ଗଲେ ଦୁର୍ଭିକ୍ଷ ବିରୁଦ୍ଧରେ ମହା-ସମ୍ମିଳନୀରେ ଯୋଗ ଦେବେ । ଆଗେଇ ଚାଲିଲା ଛାତ୍ର ଆନ୍ଦୋଳନ । ଚାଲିଲେ ଆହୁରି ଆଗକୁ- ସାଥୀ ସଦାନନ୍ଦ ହେଲେ ରାଜ୍ୟ ଛାତ୍ର ସଂଘ ଯୁଗ୍ମ ସମ୍ପାଦକ । ୧୯୪୬ରେ ବମ୍ବେ ଅଭିଯାନ । ଛାତ୍ର ଆନ୍ଦୋଳନ । ଗର୍ଜି ଉଠେ ଭାରତ । ଛାତ୍ରକୁଳ ଜାଗ୍ରତ-ବମ୍ବେ ସମ୍ମିଳନୀ-କଂଗ୍ରେସୀ ସରକାର କହେ, "କୁହାଇ ଦିଆଯିବ ନାହିଁ" । "ସବୁ ମନ୍ତ୍ରେ ବନ୍ଦ କର" । କିନ୍ତୁ ଛାତ୍ର ଥାଟ ପ୍ରସ୍ତୁତ । ଯାଇଥାନ୍ତି ଓଡ଼ିଶାରୁ ସଦାନନ୍ଦ, ହରିବନ୍ଧୁ, ବିଶ୍ୱନାଥ, ନିରୂପମା ପ୍ରଭୃତି ଅନେକ । ଛାତ୍ର ସେନା ପ୍ରସ୍ତୁତ । ସରକାର, ପୋଲିସ୍ ବାହିନୀ ଗୁଳି ବନ୍ଧୁକ ତିଆର । ହେଲା ଗୁଳମାଡ଼ । ଲୁହ ବୁହା ଗ୍ୟାସ୍ ପ୍ରୟୋଗ । ପାଣି ପାଇପ୍‌ରୁ କୋଲ୍ଡ ଜଳ ମାଡ଼ । ଅଚାନକ ଆକ୍ରମଣ, ତାଙ୍କୁ ବେଖାତିର କରି ଆଗେଇ ଯାଆନ୍ତି ଛାତ୍ରକୁଳ । ଓଡ଼ିଆ ନେତାଏ ଆକ୍ରାନ୍ତ । ପାଣିରେ ପହଁରି ଆଖି ପୋଛି, ଧାଁ ଧଉଡ଼ କରି ନିଜକୁ ରକ୍ଷା କଲେ । ସାବାସ୍ । ନେତା ଥିଲେ ସେହି ସାଥୀ ସଦାନନ୍ଦ । ଆଉ ଏକ ପର୍ବ, କଟକରେ ୧୯୪୭ରେ ସର୍ବ ଭାରତୀୟ ଛାତ୍ରସଂଘ କାଉନସିଲ୍ ମିଟିଂ ହଲ୍, ମୁକ୍ତ ହଲ୍‌ରେ । ବହୁ ନେତାଙ୍କ ସମାଗମ କ. ବିଶ୍ୱନାଥ ମୁଖାର୍ଜୀ, କ. ଅନ୍ନଦା ଭଟ୍ଟାଚାର୍ଯ୍ୟଙ୍କ ସମେତ ଅନେକ । ଓଡ଼ିଶାର ଛାତ୍ର ସଂଘ ନେତା ଜଗତଦାସଙ୍କ ନେତୃତ୍ୱରେ ସମସ୍ତ ବ୍ୟବସ୍ଥା । ରାମଚନ୍ଦ୍ର ରାମ, ଗଙ୍ଗାଧର ରଥ, ଦୁର୍ଗାଚରଣ ମହାନ୍ତି, ରସାନନ୍ଦ ନାୟକ, ନିରୂପମା ରଥ, ପୂର୍ଣ୍ଣାନନ୍ଦ ଦାସ ଓ ଅନେକ । ମୋ ଭଳି ଅନେକ କର୍ମୀ ।

୧୯୪୪ରେ ଗଞ୍ଜାମରେ ଚାଷୀ ଉଦ୍‌ବେଳନ । ଆସିକାରେ ରୟତ ସମ୍ମିଳନୀ । ସେଇଠାରୁ ଆରମ୍ଭ ହୁଏ ନୂଆ ପ୍ରେରଣା, ନୂଆ ଚେତନା । ମୁସ୍ତାଦାରୀ ଜମିଦାରୀ ପ୍ରଥା ବିରୁଦ୍ଧରେ ଜନଜାଗରଣ । ସାଧୁଚରଣ ମହାନ୍ତି, ଗୁରୁଚରଣ ପଟ୍ଟନାୟକ, ହରି ଦାସ, ଗୋବିନ୍ଦ ପ୍ରଧାନ ପ୍ରମୁଖ ଅନେକ । ଆନ୍ଦୋଳନର ସାମନାରେ । ବିଜୟ ଦାସ ସେଇ ଆଗ ଧାଡ଼ିରେ । ସାଥୀ ସଦାନନ୍ଦ ରୟତ ଆନ୍ଦୋଳନ ଭିତରେ ମଧ୍ୟ ଥିଲେ । ଛାତ୍ର ଚାଷୀଙ୍କ ସମନ୍ୱୟରେ । କମ୍ୟୁନିଷ୍ଟ ପାର୍ଟିର ଜଣେ ଟାଣୁଆ ଓ ଆଗୁଆ କର୍ମୀ, ଆଉ ସାଥୀ ଦୂତୀକୃଷ୍ଣ ମଧ୍ୟ ଆଗରେ, ସମ୍ମୁଖରେ । ଆନ୍ଦୋଳନ ବଡ଼ ଜୋରଦାର । ସମଗ୍ର ଗଞ୍ଜାମରେ ଆସିକା, ଶେରଗଡ଼, ଟାକରଡ଼ା, ପାଟପୁର, ଗୌତମୀ ସର୍ବତ୍ର ରୟତ ଆନ୍ଦୋଳନର ଝଡ଼ । ସେଥିରେ ନିଜକୁ ସାମିଲ କରନ୍ତି, ଜେଲ୍ ଯାଆନ୍ତି ସଦାନନ୍ଦ ।

୧୯୪୮ ଅପ୍ରେଲ-କଲିକତାରେ ପାର୍ଟି କଂଗ୍ରେସ । ନୂତନ ସଂଗ୍ରାମ-"ସଢିଗଲି ସରକାରକୁ ଔର୍ ଏକ ଧକ୍‌କା ଦେ" । ଏକ ନୂଆ ଆବାଜ୍ । ତାରି ଆହ୍ୱାନରେ ନୂଆ ସଂଗ୍ରାମ । ନୂଆ ତରିକା । ସରକାର ପ୍ରକମ୍ପିତ । ନେତାମାନେ ଗିରଫ ହେବାକୁ ବସିଲେ । ଠିକ୍ ସେତିକି ବେଳେ ରୟତ ଆନ୍ଦୋଳନ ଶେଷ ପର୍ଯ୍ୟାୟରେ । ୧୯୪୮ ମଇ ମାସ ୨୪ ତାରିଖ-ଟାକରଡ଼ା ଗୁଳିକାଣ୍ଡ- କେତେ ନିରୀହ ପ୍ରାଣର ଆତ୍ମ ବଳୀଦାନ । ଇତିହାସ ହୁଏ ଟାକରଡ଼ା । ଚାଲି ଯାଇଛନ୍ତି ଗୋବିନ୍ଦ ପ୍ରଧାନ, ଆଜି ଅଛନ୍ତି

ରାଧାକୃଷ୍ଣ ପ୍ରଧାନ । ଅଗ୍ନି ସ୍ଫୁଲିଙ୍ଗ ସେ, ନବୀନ, ତେଜୀୟାନ୍ ଇତିହାସର କଥା ।

ଜେଲ୍ ଜୀବନ ଭିତରେ ସାଥୀ ସଦାନନ୍ଦ, ଅନ୍ୟତ୍ର ସାରା ଓଡ଼ିଶାରେ କମ୍ୟୁନିଷ୍ଟ ନେତାଙ୍କ ଆତ୍ମଗୋପନ ଜୀବନ ଭିତରେ ସାଥୀ ଦୂତୀକୃଷ୍ଣ । ଗଞ୍ଜାମ, ପୁରୀ, ଭୁବନେଶ୍ୱର ଅତିକ୍ରମ କରି ଆସନ୍ତି-ରାଜ୍ୟ ଆତ୍ମଗୋପନ କେନ୍ଦ୍ରକୁ-କେନ୍ଦ୍ରୀୟ ବୈଠକକୁ । କଟକକୁ । ସାଥୀ ସଦାନନ୍ଦ କଂଗ୍ରେସ ସରକାର ଜେଲ୍‌ରେ ବନ୍ଦୀ । ପରେ ପାଆନ୍ତି ମୁକ୍ତି ବହୁ ସଂଘାତ ଭିତରେ । ଆସେ ନୂଆ ସମ୍ବିଧାନ, ନୂଆ ନିର୍ବାଚନ । ଭାରତରେ ଓ ଓଡ଼ିଶା ଇତିହାସରେ ଏକ ନୂଆ ପର୍ବ, କମ୍ୟୁନିଷ୍ଟ ପାର୍ଟିର ନିର୍ବାଚନରେ ଲଢ଼େଇ ଓ ବିଜୟ । ବିଧାନସଭାରେ ନୂଆ ଶକ୍ତି ଉଭା । ସାତ ଜଣ ବିପ୍ଳବୀ ନେତା-ଆତ୍ମଗୋପନ ଅବସ୍ଥାରୁ ନୂଆ ଗଣତନ୍ତ୍ର ପର୍ବରେ-ନୂତନ ବିଜୟର ଝଲକ ଗୋଟାଏ ପରେ ଗୋଟାଏ । ୧୯୫୭ରେ ପୁଣି ବିଜୟ-ସାତରୁ ନ' ବିଧାୟକ । ବ୍ରହ୍ମପୁର ମଧ୍ୟବର୍ତ୍ତୀ ନିର୍ବାଚନ ସେଇ ପର୍ଯ୍ୟାୟରେ ଏକ ଅଭିନବ ଘଟଣା ।

ସାଥୀ ଦୂତୀକୃଷ୍ଣଙ୍କ ସମ୍ପାଦକ ପଦରୁ ବିଦାୟ । ସାଥୀ ସଦାନନ୍ଦ ଦାୟିତ୍ୱ ନିଅନ୍ତି ଜିଲ୍ଲା ସମ୍ପାଦକ ଭାବେ । ଗଞ୍ଜାମରେ ଆଗରୁ ଥିଲେ ହରି ଦାସ, ପରେ ଦୂତୀକୃଷ୍ଣ । ତା'ପରେ ସାଥୀ ସଦାନନ୍ଦ ଗଞ୍ଜାମ ପାର୍ଟିର ଏକ ଅଭିବୃଦ୍ଧିର ପର୍ଯ୍ୟାୟରେ ୧୯୬୫ ଯାଏଁ ପାର୍ଟିକୁ ନେତୃତ୍ୱ ଦିଅନ୍ତି । ବହୁ କାର୍ଯ୍ୟକ୍ରମ । ଓଡ଼ିଶାର ମାନଚିତ୍ରରେ ଗଞ୍ଜାମ ପାର୍ଟିକୁ ପ୍ରତିଷ୍ଠିତ କରିଦେଲେ । ବାହାଦୁର ସେ । ୧୯୬୫ରେ ଆସିକା ରାଜ୍ୟ ପାର୍ଟି ସମ୍ମିଳନୀ । ସେଠି ସେ ନିର୍ବାଚିତ ହୁଅନ୍ତି ରାଜ୍ୟ ସମ୍ପାଦକ ଭାବେ ୧୯୬୫ରୁ ୬୮ । ଆସିକାରୁ ବରଗଡ଼-୧୯୭୩ରୁ ୮୬ । ପୁରୀରୁ ବ୍ରଜରାଜନଗର । ଦୀର୍ଘପଥ । ପାର୍ଟିରେ ଏକ ପିଚ୍ଛିଳ ଓ କଠିନ ପଥ ଅତିକ୍ରମ । ଜାତୀୟ କ୍ଷେତ୍ରରେ ପାର୍ଟିର ଜାତୀୟ ପରିଷଦର ସଭ୍ୟ ହେଲେ । ରାଜ୍ୟପାର୍ଟିର କଣ୍ଟ୍ରୋଲ୍ କମିଶନର ଚେୟାରମ୍ୟାନ୍ । ପାର୍ଟିର ଉଚ୍ଚ ପଦବୀରେ ଅଭିଷିକ୍ତ । ସେ ଦୁଇ ଦୁଇ ଥର ବିଧାନସଭାରେ ବିଧାୟକ । ବାଗ୍ମୀ ଓ ମେଧାବୀ । ଦକ୍ଷ ଓ କୌଶଳୀ । ସୁନାମ ଅର୍ଜିଥିଲେ ବିଧାନସଭା ଭିତରେ । ସେ କେବଳ ଗଞ୍ଜାମର ନଥିଲେ, ସେ ଥିଲେ ସମଗ୍ର ଓଡ଼ିଶାର ।

ଅସୁସ୍ଥତା ସତ୍ତ୍ୱେ ସେ ସକ୍ରିୟ ରହୁଥିଲେ । ତାଙ୍କ ଜୀବନ ପ୍ରତି ବିପଦକୁ ବେଖାତିର କରି ସେ ରହୁଥିଲେ ସଜାଗ । ରାଜନୈତିକ ଅବଦାନ ଦେଇ ଯାଉଥିଲେ । ଦୃଢ଼ ମନୋବଳ ଥିଲା ତାଙ୍କର ସମ୍ପଦ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଥିଲେ ସକ୍ରିୟ ଓ ତେଜଶୀଳ । ଆଗାମୀ ରାଜ୍ୟ ସମ୍ମିଳନୀର ସଫଳତା ପାଇଁ ତାଙ୍କର କଳ୍ପନାକୁ ବାସ୍ତବତାର ରୂପ ଦେବା ପାଇଁ ଧାଇଁ ଯାଇଥିଲେ ତପ୍ତପାଣିର ଉତ୍ତପ୍ତ ବୈଠକକୁ । ଅଙ୍ଗୀକାର ନେଇ ଏକ ଐକ୍ୟବଦ୍ଧ ପ୍ରୀତିପୂର୍ଣ୍ଣ ବିକାଶ ପଥରେ । ପାର୍ଟିକୁ ଆଗେଇବେ ।

କର୍ମୀ ଜୀବନର ଅବସାନ ହୋଇଗଲା । ପାର୍ଟିର ବିକାଶ ଓ ଅଗ୍ରଗତିକୁ ଧ୍ୟେୟ କରି । ଧନ୍ୟ ସେ । ଶ୍ରଦ୍ଧାଞ୍ଜଳି ତାଙ୍କୁ ।

# ନିବେଦିତ ଚେତନାର ପ୍ରତିନିଧି

ମନମୋହନ ମିଶ୍ର

କମ୍‌ରେଡ୍ ସଦାନନ୍ଦ ମହାନ୍ତି ଆଉ ନାହାନ୍ତି । ଓଡିଶାର ଛାତ୍ର ଆନ୍ଦୋଳନରେ ଗଞ୍ଜାମ ଜିଲାର ଯେଉଁ କେତେଜଣ ତରୁଣ ୧୯୪୨ଠାରୁ ୧୯୫୫-୫୬ ପର୍ଯ୍ୟନ୍ତ ବିଜୟ ପତାକା ଉଡାଇଥିଲେ, ଓଡିଶାରେ ଶିକ୍ଷା ଜଗତରେ ଏକ ପ୍ରଚଣ୍ଡ ଉଦ୍‌ବେଳନ ଆଣିଥିଲେ ସେମାନଙ୍କ ମଧ୍ୟରେ ପ୍ରଥମ ଧାଡିରେ ଥିଲେ ସଦାନନ୍ଦ, ହରିବନ୍ଧୁ ବେହେରା ଓ ଦ୍ୟୁତିକୃଷ୍ଣ ପଣ୍ଡା । ଏମାନେ ଥିଲେ ବିଭିନ୍ନ । କିନ୍ତୁ ପରସ୍ପରର ପରିପୂରକ । ମୋର ସୌଭାଗ୍ୟ ଯେ ଏହି ସମସ୍ତଙ୍କୁ ମୁଁ ବ୍ରହ୍ମପୁରର ଖଲ୍ଲିକୋଟ କଲେଜରେ ପ୍ରଥମେ ଭେଟିଥିଲି ଓ ସେମାନଙ୍କର ଆତ୍ମତ୍ୟାଗ, ସଂଗଠନ କ୍ଷମତା, ଛାତ୍ର ଜନତା ଭିତରେ ନେତୃତ୍ୱର ପରାକାଷ୍ଠା ଅନନ୍ୟ ଥିଲା । ଏହି ଛାତ୍ର ଆନ୍ଦୋଳନର ଯେ ଓଡିଶାର ଯୁବକ ଛାତ୍ର ପାଇଁ ଏକ ଆଲୋକ ବର୍ତ୍ତିକା ଥିଲା ଓ ନୂତନ ଭାରତ ଓ ଓଡିଶା ଗଠନର ମୂଳ ଭିତ୍ତି ପକାଇଥିଲା ଏଥିରେ କୌଣସି ସନ୍ଦେହ ନାହିଁ ।

ଏମାନେ ସମସ୍ତେ ଥିଲେ ମଧ୍ୟମ ଚାଷୀ ଘରର ପିଲା । ପରିବାରର ଜଞ୍ଜାଳ ଅନଟନ ଅସହଣୀୟ ଥିଲା । ତଥାପି ଏମାନେ ନିବେଦିତ ଭାବରେ ଅଗ୍ରସର ହୋଇଥିଲେ । ଆପଣାକୁ ସଂଗ୍ରାମର ସେନାପତି କରିବା ପାଇଁ ସମସ୍ତ ପ୍ରକାର ନୀତିତତ୍ତ୍ୱ, ଚିନ୍ତାଧାରା ଓ ବାଗ୍ମିତା ହାସଲ କରିଥିଲେ । ହରିବନ୍ଧୁ ବେହେରାଙ୍କର ଅନେକ ବର୍ଷ ହେଲା ପରଲୋକ ହୋଇଯାଇଛି । ସଦାନନ୍ଦ ଏବେ ଆମକୁ ମୂର୍ଚ୍ଛି ଦେଇ ଚାଲିଗଲେ ।

## ତେଲେଙ୍ଗାନ ଆନ୍ଦୋଳନ

ସଦାନନ୍ଦ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଇ ତାହାର ଏକ ଅଗ୍ରଗାମୀ ନେତା ହେବା ପୂର୍ବରୁ ମଧ୍ୟ ନୀତିତତ୍ତ୍ୱ ଓ ଆଦର୍ଶ କ୍ଷେତ୍ରରେ ଅସାଧାରଣ ବ୍ୟୁତ୍ପତ୍ତି ଅର୍ଜନ କରିଥିଲେ । ଭାରତର ରାଜନୈତିକ ସ୍ୱାଧୀନତା ଲାଭ ପରେ ତେଲେଙ୍ଗାନା ଚାଷୀ ଆନ୍ଦୋଳନ ବେଳେ ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟି ଯେତେବେଳେ ଆଇନତଃ ପଶ୍ଚିମବଙ୍ଗ ଓ କାର୍ଯ୍ୟତଃ ସମସ୍ତ ଭାରତରେ ବେଆଇନ ହୋଇଯାଇଥିଲା ସେତେବେଳେ ସେ କାରାଗାରରେ ଯେଭଳି ମାନସିକ ଓ ଶାରୀରିକ ଯନ୍ତ୍ରଣା ଭୋଗ କରୁଥିଲେ ତାହା ମୋର ସ୍ମରଣରେ ଆସୁଛି । ସେତେବେଳେ ତାଙ୍କୁ କେଜାଣି କାହିଁକି ନେଇ କେନ୍ଦୁଝରର ଜେଲରେ ରଖାଯାଇଥିଲା । ଅଜ୍ଞାତ ବାସ ଭିତରେ ତାଙ୍କ ଠାରୁ ମୁଁ ଗୋଟିଏ ପତ୍ର ପାଇଥିଲି । ସେହି ପତ୍ରର ଜ୍ୱଳନ୍ତ ଶେଷ ପ୍ରେମ ଓ ଭବିଷ୍ୟତ ଦର୍ଶନରେ ମୁଁ ଅଭିଭୂତ ହୋଇଥିଲି । ସେତିକି ବେଳେ କଟକ ଜେଲରେ ଅଳ୍ପ କାଳ ପରେ ମୋତେ ଅଜ୍ଞାତ ବାସରୁ ଗିରଫ କରି ଆଣିବା ପରେ ଓଡିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀ ସଦାନନ୍ଦଙ୍କୁ ଜେଲଖାନାରେ ଭେଟି ତାଙ୍କ ସହିତ ଯେଉଁ କଥୋପକଥନ କରିଥିଲେ ତାହାରି ବିବରଣୀରୁ ଲକ୍ଷ୍ୟ କରିପାରିଥିଲି ଯେ ସଦାନନ୍ଦ ମାର୍କ୍ସବାଦ-ଲେନିନ୍‌ବାଦ ତତ୍ତ୍ୱ ଉପରେ ଆପଣାର ଚିନ୍ତାଧାରା ଉଜ୍ଜ୍ୱଳ ଓ ପ୍ରମାଦ ଶୂନ୍ୟ ରଖିଥିଲେ । ସେହି କଥୋପକଥନ ପରେ ମୋର କବିତାଟିଏ ସଦାନନ୍ଦବାବୁଙ୍କୁ ମୁଁ ଉତ୍ସର୍ଗ କରି ପଠାଇଥିଲି । ତାହା ଥିଲା :-

"ହେ ଲେନିନ୍ ବରାଭୟ !
ଯାହା ହୁଡିବାର ହୁଡିଛୁ ପଥ
ଅମଡା ମାଡିଛୁ ମାଡିଛୁ ସତ
ଅମଡା ମାଡିଛି ଆମରି ରଥ
ଶକ୍ତିକରିଛୁ କ୍ଷୟ
ଦମ୍ଭ ସାହାସର ପଙ୍କ ସାଗର
ପନ୍ଥା ନଥିଲା ଥୟ
ତଥାପି ତୁମର ସୈନିକ ବଳ
ଅବିଚଳ ନିଷ୍ଠୟ
ସେହିତ ତୁମରି ଦାନ
ସେହିତ ତୁମରି ଜୟ
ହେ ଲେନିନ୍ ବରାଭୟ !
ଯେ ଆଖି ଦେଖିଲା ରାତ୍ରୀ ଛାଣି
ଅନ୍ଧାର ବୁକେ ଆଲୋକର ମୁଖେ
ପତାକା ହାଣି ସେ ପତାକା ହାଣି
କହିଲା ଉଚ୍ଚେ "ରଖରେ ଜାଣି
"ମଣିଷ-ମାର୍କସ-ନିଲାମକାରୀରେ
ରଖ ଏହା ପରାମାଣି
"ଭାତ ଆଉ ଭୁର୍ଗ ମୁକ୍ତିର ପଇ
"ବଲଶେଭିକର ରକ୍ତ ସିପାହୀ
ଯାଗ୍ରତ ସାବଧାନୀ

"ମସ୍କୋ ସେ ନୁହେଁ ରୁଷିଆର
ସେ ଯେ ଦୁନିଆର ରାଜଧାନୀ
"ସେଇତ ତୁମରି ଦାନ
ସେଇତ ତୁମରି ଜୟ
ହେ ଲେନିନ୍ ବରାଭୟ !

ଓଡିଶାରେ ଯେଉଁ ପାର୍ଟିରେ ଏପରି କମ୍ରେଡ୍ ମାନେ ଜନଜୀବନର ମୂଳଦୁଆ ପକାଇଥିଲେ ବିଶେଷତଃ ଯିଏ ବୋଧହୁଏ ଦୁଇବାର ବହୁ ବର୍ଷ ପର୍ଯ୍ୟନ୍ତ କମ୍ୟୁନିଷ୍ଟ ପାର୍ଟିର ସାଧାରଣ ସଂପାଦକ ଥିଲେ ସେହି ପାର୍ଟିର ଆତ୍ମ ବଳିଦାନ, ଦଳିତ ମୁକ୍ତି ସଂଗ୍ରାମର ବହ୍ନିଯେ ସୁନାରେଣୁ ଭଳି ଓଡିଶାର ପୁରପଲ୍ଲୀ, ଜନପଦ, ପାହାଡ ଜଙ୍ଗଲ ବିଛି ହୋଇରହିଛି ଏହା କଦାପି ବିସ୍ମରଣ ହେବ ନାହିଁ । ଆଉ ଏହି ବିରାଟ ଓ ବର୍ଷ ବର୍ଷ ବ୍ୟାପୀ ଆନ୍ଦୋଳନର ଧାରା ଯେ ଅନ୍ତଃ ସଲିଳା ଫଲ୍‌ଗୁ ଭଳି ଓଡିଶାକୁ ପ୍ଲାବିତ କରି ରଖିଛି ତାହା ନିଶ୍ଚିତ ଭାବରେ ଏହି ମାଟିକୁ ଦେଶ ପ୍ରେମରେ ଉର୍ବର ଓ ଉର୍ଜ୍ଜସ୍ୱଳ କରି ରଖିବ ।

ଅବସାଦ, ଗ୍ଳାନି, ଦୁର୍ବଳତାର ସମସ୍ତ ଅପଘାତ ସତ୍ତ୍ୱେ ପୃଥିବୀର ସର୍ବହରାର ଆନ୍ଦୋଳନ ଯେ ବ୍ୟର୍ଥ ହେବ ନାହିଁ ତାର ପ୍ରମାଣ କେବଳ ମାର୍କ୍ସବାଦ-ଲେନିନ୍ ବାଦର ବୈଜ୍ଞାନିକ ତତ୍ତ୍ୱ ନୁହେଁ ତାହାର ପ୍ରମାଣ ପୃଥିବୀର କୋଟି କୋଟି ନିପ୍ପେଷିତ ଶ୍ରମଜୀବୀ, ବୁଦ୍ଧଜୀବୀ, ମନିଷୀଧର ପ୍ରାଜ୍ଞଙ୍କଠାରୁ ନୀରକ୍ଷର ମନୁଷ୍ୟ ଗୋଷ୍ଠୀର ସଂଗ୍ରାମୀ ଜୀବନ ଓ ଆତ୍ମବଳିଦାନର ପରାକାଷ୍ଠା ।

ସଦାନନ୍ଦଙ୍କ ପରି କମ୍ରେଡ୍‌ମାନେ ଯେ ସେଥିରେ ଆପଣାକୁ ମିଳେଇଦେଇ ଶାରୀରିକ ଭାବରେ ନିଶ୍ଚିହ୍ନ ହୋଇଗଲେ ତାହାର ଅଲିଭା ସ୍ୱାକ୍ଷର ଚିର କାଳ ଓଡିଶାର ମାଟିରେ ଲେଖାହୋଇରହିବ ।

# ସଦାନନ୍ଦ ମହାନ୍ତି ଓ ଓଡିଶାର ଶିକ୍ଷକ ଆନ୍ଦୋଳନ

**ନୀଳମଣି ସାହୁ**

ସାଥୀ ସଦାନନ୍ଦ ମହାନ୍ତି ଆଉ ଆମ ଗହଣରେ ନହାନ୍ତି । ଦୀର୍ଘ ୨୫ବର୍ଷ ଧରି ଶିକ୍ଷକମାନଙ୍କର ସାମାଜିକ ଓ ଅର୍ଥନୈତିକ ଅଭିବୃଦ୍ଧି ପାଇଁ ଓଡିଶାରେ ଶିକ୍ଷକ ଆନ୍ଦୋଳନ ଚାଲି ଆସିଛି । ଓଡିଶାର ବିଭିନ୍ନ ରାଜନୈତିକ ଦଳର ନେତୃବୃନ୍ଦ ଏହି ଆନ୍ଦୋଳନକୁ ସମର୍ଥନ କରି ଆସିଛନ୍ତି । ସେମାନଙ୍କ ମଧ୍ୟରେ ସାଥୀ ସଦାନନ୍ଦ ମହାନ୍ତି ଥିଲେ ଅଗ୍ରଣୀ । ପୂର୍ବେ ଓଡିଶାର ଶିକ୍ଷକମାନେ ଗୋତି ଶ୍ରମିକଙ୍କ ଭଳି କାର୍ଯ୍ୟ କରୁଥିଲେ । ଶିକ୍ଷାନୁଷ୍ଠାନମାନଙ୍କର ପରିଚାଳନା କମିଟିର ସଭାପତି, ସମ୍ପାଦକ ଓ ସଭ୍ୟମାନଙ୍କର ମର୍ଜି ଉପରେ କାର୍ଯ୍ୟ କରୁଥିଲେ । ଆଜିର ଶିକ୍ଷକ କାଲି ବେକାର ହୋଇ ରାସ୍ତାରେ ଘୁରି ବୁଲୁଥିଲା । ସମାନ କାମ ପାଇଁ ସରକାରୀ ଶିକ୍ଷକମାନଙ୍କୁ ଏକ ଦରମା ହାର ଯାଉଥିବା ବେଳେ ବେସରକାରୀ ଶିକ୍ଷକମାନଙ୍କର ଆତ୍ମସମ୍ମାନବୋଧରେ ଘୋର ଆଘାତ ଲାଗୁଥିଲା । ଚାକିରି ସର୍ତ୍ତାବଳୀ, ଦରମା ସମୀକରଣ ଓ ଅନ୍ୟାନ୍ୟ ଦାବୀ ନେଇ ଅତୀତର ବିଭିନ୍ନ ସମୟରେ ଶିକ୍ଷକ ସମାଜ ଆନ୍ଦୋଳନ କରିଥିଲା । ବିଭିନ୍ନ ରାଜନୈତିକ ନେତୃବୃନ୍ଦ ଏହି ଆନ୍ଦୋଳନକୁ ସମର୍ଥନ କରି ଆସୁଥିଲେ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସାଥୀ ସଦାନନ୍ଦ ମହାନ୍ତିଙ୍କ ଉତ୍ସାହ ଓ ପ୍ରେରଣା ଶିକ୍ଷକ ଆନ୍ଦୋଳନକୁ ଅଦମ୍ୟ କରି ଗଢ଼ି ତୋଳିଥିଲା । ଆନ୍ଦୋଳନରେ ଶିକ୍ଷକମାନେ ସଫଳକାମ ହେଉଥିଲେ ।

ମଣିଷ ଏକ ରାଜନୈତିକ ପ୍ରାଣୀ । କଥାରେ ଅଛି, କେହି ଯଦି କହେ ମୁଁ ରାଜନୀତି ଜାଣେନା, ମୁଁ ରାଜନୀତି କରେନା, ମୋତେ ରାଜନୀତି ସ୍ପର୍ଶ କରେନା, ତେବେ ସେ ଭଗବାନ ହୋଇ ପାରନ୍ତି ଅବା ଶଇତାନ ହୋଇ ପାରନ୍ତି, କିନ୍ତୁ ମଣିଷ ନୁହନ୍ତି । ମଣିଷ ଯେପରି ଏକ ମରଣଶୀଳ ପ୍ରାଣୀ, ଠିକ୍ ସେଇପରି ଏକ ରାଜନୈତିକ ପ୍ରାଣୀ । ରାଜନୈତିକ ଅଧିକାର ତାର ଜନ୍ମଗତ ଅଧିକାର । କିନ୍ତୁ ଓଡିଶା ଏକ ବିଚିତ୍ର ରାଜ୍ୟ । ଏବଂ ବିଚିତ୍ର ମଧ୍ୟ ଏହାର ନିୟମାବଳୀ । ଏଠାରେ ଶିକ୍ଷକମାନଙ୍କର ରାଜନୈତିକ ଅଧିକାର ନାହିଁ । ଯେଉଁମାନେ ରାଜନୀତି ବିଜ୍ଞାନ ପଢନ୍ତି ଓ ରାଜନୀତି ସମ୍ପର୍କରେ ଜାଣନ୍ତି, ସେମାନଙ୍କର ହିଁ ରାଜନୈତିକ ଅଧିକାର ନାହିଁ । ପୃଥିବୀ କଥା ବାଦ୍ ହେଉ, ଭାରତର କୁତ୍ରାପି ଏକଥା ଦେଖା ଯାଏନି । ଆମର ପଡୋଶୀ ରାଜ୍ୟ ବଙ୍ଗଳା, ବିହାର, ମଧ୍ୟପ୍ରଦେଶ ଓ ଆନ୍ଧ୍ରପ୍ରଦେଶରେ ଶିକ୍ଷକମାନଙ୍କର ରାଜନୈତିକ ଅଧିକାର ରହିଛି । ରାନୈତିକ ଅଧିକାର ଦେଲେ, ହୁଏତ ଶିକ୍ଷକମାନେ ଓଡିଶାର ରାଜନୀତିକୁ କଳୁଷିତ କରିଦେବେ, ସେହି ଆଶଙ୍କାରେ ହୁଏତ ସେମାନଙ୍କୁ ରାଜନୈତିକ ଅଧିକାର ଦିଆଯାଉନାହିଁ । ଶିକ୍ଷକମାନଙ୍କୁ ରାଜନୈତିକ ଅଧିକାରରୁ ବଞ୍ଚିତ କରି, ଆଜି ଓଡିଶାର ରାଜନୈତିକ ବାୟୁମଣ୍ଡଳ କେତେ ନିର୍ମଳ ତାହା ଓଡିଶାର ଜନସାଧାରଣ ଲକ୍ଷ୍ୟ କରୁଥିବେ । ନିର୍ବାଚନ ପୂର୍ବରୁ ଶିକ୍ଷକମାନଙ୍କୁ ରାନୈତିକ ଅଧିକାର ଦଆଯିବ ବୋଲି କୌଣସି କୌଣସି ରାଜନୈତିକ ଦଳ ନିର୍ବାଚନ ଇସ୍ତାହାରରେ ଲେଖିଛନ୍ତି, କିନ୍ତୁ ନିର୍ବାଚନ ପରେ ଶାସନ ଗାଦିରେ ବସିବା ପରେ ଅନ୍ୟ ପ୍ରତିଶ୍ରୁତି ଭଳି ଏହି ପ୍ରତିଶ୍ରୁତିକୁ ମଧ୍ୟ ଭୁଲି ଯାଉଛନ୍ତି ।

ରାଜନୈତିକ ଦାବୀ ଓ ଅନ୍ୟାନ୍ୟ ଦାବୀ ସମୂହକୁ ନେଇ ଶିକ୍ଷକ ସମାଜ ପୁଣି ଭବିଷ୍ୟତରେ ଆନ୍ଦୋଳନ କରିବ । କିନ୍ତୁ ସାଥୀ ସଦାନନ୍ଦ ମହାନ୍ତି ସେତେବେଳେ ଆମ ଗହଣରେ ନଥିବେ । ତଥାପି ମୁଁ ଆଶାକରେ ସାଥୀ ସଦାନନ୍ଦ ମହାନ୍ତିଙ୍କ ଉତ୍ସାହ ଓ ପ୍ରେରଣାର ସ୍ମୃତି ଆମକୁ ପୁଣି ଅଦମ୍ୟ, ଅନମନୀୟ କରି ଗଢ଼ି ତୋଳିବ ଓ ଆମେ ସଫଳକାମ ହେବା ।

ତାଙ୍କର ସ୍ମୃତି ଆମ ହୃଦୟରେ ଅମ୍ଳାନ ରହୁ ।

**ଦର୍ଶନ ଅଧ୍ୟାପକ, ବିଜ୍ଞାନ ମହାବିଦ୍ୟାଳୟ**
**ହିଞ୍ଜିଳିକାଟୁ**
**ସଭାପତି, ଗଞ୍ଜାମ ଜିଲ୍ଲା କମିଟି ନିଖିଳ ଉତ୍କଳ ବେସରକାରୀ**
**କଲେଜ ଶିକ୍ଷକ ସଂଘ**

# ସଦାନନ୍ଦ ମହାନ୍ତିଙ୍କ ପବିତ୍ର ଏକାଦଶାହ ଉପଲକ୍ଷେ

## ଅଭୁଲା ସ୍ମୃତି

ସାନକକା ହେ,
ଚାଲିଗଲ କରି ଏକା ହେ ।
ସପନରେ ସୁଦ୍ଧା ଭାବି ତ ନଥିଲୁ
ଏତେ ଶୀଘ୍ର ଯିବ ଚାଲି
ମନର ଭାବନା ମନରେ ରହିଲା
ଆମକୁ ନ ଯିବ ଭୁଲି ।
ଅତୀତରେ ଆମେ କେତେ ଅଳି କଲୁ
ସବୁ ସମାଧାନ କରିଛ ତୁମେ
ଏବର ଗୁହାରି କା' ଆଗେ କହିବୁ
ମର୍ତ୍ତ୍ୟଖଣ୍ଡ ତୁମେ ଗଲ ସେ ଧାମେ ।
ନନା, ବୋଉ, ଖୁଡ଼ୀ, କକା ଯାଇଥିଲେ
ତଡ଼ାତଡ଼ି ହୋଇ ଆର ପାରିକି
ପଞ୍ଚମରେ ତମେ ଛାଡ଼ି ଚାଲିଗଲ
ସମସ୍ତଙ୍କୁ କରିଗଲ ଏକାକୀ ।
ସାରା ଓଡ଼ିଶାରେ ନାଁ କରିଥିଲ
ସହି ନାନା ଦୁଃଖ କଷଣ ପୀଡ଼ା
ଗଲାବେଳେ ସବୁ କରିଦେଇ ଗଲ
ଅଜଣା ଅଶୁଣା ଆଉ ଅଲୋଡ଼ା ।

କି' ଦେଇ ପୂଜିବି ପୂଜିତ ଜାଣିନି
କିପରି ଭଜିବି ଭଜିତ ଜାଣିନି
ଅଧମାଧମ ମୁଁ ଅକିଞ୍ଚନ
ଦୂରରୁ ପ୍ରଣାମ, ଦିଅ ହେ ଆଶିଷ
ତବ ଆଦର୍ଶରେ ଜୀବନ ଧନ୍ୟ ।
ଲୁହରେ ଲୁହରେ ଖୋଜୁଛି ତୁମକୁ
ତମେ ଚାଲିଗଲ କାହିଁ ?
ସ୍ମୃତିର ମନ୍ଦିରେ ଦୀପାଳି ଜାଳୁଛି
ଅସହାୟ ଆଜି ହୋଇ ।
ତୁମରି ଆତ୍ମାର ସଦ୍‌ଗତି ନିମନ୍ତେ
ପ୍ରଣତି ଢାଳୁଛୁ ନତମସ୍ତକ ହୋଇ ।

ତମର ପୁତୁରା : ଲିଙ୍ଗରାଜ, ବୋହୂ ସୁଲୋଚନା, ନାତି-ଅଜିତ୍,
ସୁଜିତ୍, ରଞ୍ଜିତ୍ ଓ ଅମିତ୍

# ସେ ଜଣେ ମଣିଷ, ତାଙ୍କ ନାମ ସଦାନନ୍ଦ ମହାନ୍ତି

# ଶେଷରେ ସେ କମ୍ୟୁନିଷ୍ଟ

ଶୈଳ ବେହେରା

ସଦାନନ୍ଦବାବୁଙ୍କୁ ଜାଣିଥିଲି ଗତ ପଚିଶି ବର୍ଷ ଧରି । ନିକଟତର ହେଲି ଏଇ ପାଞ୍ଚମାସ ମଧ୍ୟରେ । ଶରତ ପଟ୍ଟନାୟକଙ୍କ ମୃତ୍ୟୁ ପରେ । ତିନି ଚାରି ବର୍ଷ ତଳେ ସଦାନନ୍ଦ ବାବୁ ଏଇ କଟକ ବଡ଼ ମେଡିକାଲ୍‌କୁ ଆସିଥିଲେ ଚିକିତ୍ସିତ ହେବା ପାଇଁ । ରୋଗଶଯ୍ୟାରେ ହୋ-ଚି-ମିନ୍ ବହି ପଢୁ ପଢୁ ମୋତେ ଡକାଇ ପଠାଇଥିଲେ ଦେଖିବା ପାଇଁ । ଏଥର ପୁଣି ବଡ଼ ମେଡିକାଲ୍‌କୁ ଆସିଲେ । ସେହି ମେଡିସିନ୍ ଓ୍ୱାର୍ଡକୁ । ମୋତେ ଡକାଇ ନାହାନ୍ତି । ପୂଜ୍ୟ ନରସିଂହ ତ୍ରିପାଠୀ ଏବଂ ସଦାନନ୍ଦବାବୁଙ୍କର ଡାକ୍ତର ଜାମାତାଙ୍କ ଠାରୁ ଖବର ପାଇ ପହଞ୍ଚିଲି । ମୁଁ ତାଙ୍କୁ ଦେଖିଲି । ସେ ମୋତେ ଦେଖିପାରିଲେ ନାହିଁ । ସେ ଜୀବିତ ଥିଲେ, ଚେତାଶୂନ୍ୟ ଅବସ୍ଥାରେ । ସେଦିନ ବହୁ ସମୟ ଧରି ତାଙ୍କ ମୁହଁକୁ ଚାହିଁ ବସିଛି । ୧୭ ତାରିଖ ସନ୍ଧ୍ୟା ନଇଁବା ପରେ ପରେ ସଦାନନ୍ଦବାବୁଙ୍କ ଦେହ ଶିଥିଳ ହୋଇଆସିଲା । ତାଙ୍କରି ହାତକୁ ଧରିବା ଅବସ୍ଥାରେ ସେ ଚାଲିଗଲା । ବଡ଼ ମର୍ମାନ୍ତିକ ସେ ବିଚ୍ଛେଦ !! ଛ'ଟା ବାଜିବାକୁ ପାଞ୍ଚ ମିନିଟ୍ ବାକିଥାଏ । ଆସିଲି ତାଙ୍କ ବନ୍ଧୁ ଓ ଅନ୍ୟମାନଙ୍କୁ ଖବର ଜଣାଇ ଦେବାକୁ ।

ଜୁନ୍ ମାସରୁ ନଭେମ୍ବର ମାସ ମଧ୍ୟରେ ସେ ମୋ ସହିତ ପତ୍ରାଳାପ କରିଛନ୍ତି । ଟେଲିଫୋନ୍‌ରେ ଯୋଗାଯୋଗ ରଖିଛନ୍ତି । କଟକ ଆସିଲେ ଦେଖା ନକରି ଫେରିନାହାନ୍ତି । ଥରେ ନୁହଁ, ବହୁ ବାର । ଘଣ୍ଟା ଘଣ୍ଟା ଧରି ବସିଛୁ । ରାଜନୈତିକ ଜୀବନର ଅନେକ ଅକୁହା କାହାଣୀ ସେ କହିଛନ୍ତି ଅତି ନିର୍ଭୀକ ଚିତ୍ତରେ । ମନେ ହେଉଥିଲା, ଏଇ କେତେ ଦିନ ଧରି ସେ ଖୁବ୍ ଦାମ୍ଭିକ ପାଲଟି ଯାଇଛନ୍ତି । କୌଣସି ବାଧା, ପ୍ରତିବନ୍ଧକ ତାଙ୍କୁ ଆଉ ଯେପରି ବାଟ ଓଗାଳି ପାରିବ ନାହିଁ । ସେ ମୃତ୍ୟୁ ହେଉ ବା ରାଜନୈତିକ ଦର୍ଶନ ହେଉ ।

ତାରିଖ ମୋର ଠିକ ମନେ ଅଛି । ଜୁନ୍ ମାସ ୨୬ ତାରିଖ । ଶରତ ପଟ୍ଟନାୟକଙ୍କ ସ୍ମୃତିସଭା କିପରି ହେବ, ସେହି ବିଷୟରେ ଯୋଜନା ପ୍ରସ୍ତୁତ କରିବା ପାଇଁ ସେ ଡକାଇଥିଲେ ଭୁବନେଶ୍ୱର । ସାଥୀରେ ଥିଲେ ଶ୍ରୀଯୁକ୍ତ ବାସୁଦେବ ସାମଲ । ବୀର ସୁରେନ୍ଦ୍ରସାଏ ନଗରର ପଛ ପଟରେ ଥିବା ତାଙ୍କର ବାସଭବନରେ ଆମେ ପହଞ୍ଚିଲୁ । ଅତି ପ୍ରଗଳ୍ଭ ଓ ଆମୋଦ ଚିତ୍ତରେ ସେ ନିଜକୁ ମୁକ୍ତ କରିଦେଲେ ଆମ ଆଗରେ । ସାଧାରଣ ବାତାବରଣକୁ ଜମାଇ ଦେବା ଲୋକ ହେଉଛନ୍ତି ସଦାନନ୍ଦ ବାବୁ । ସେଦିନ ତାଙ୍କୁ ଦେଖି ମନେ ହୋଇଥିଲା, ସେ ଯେପରି ଅନେକ ଦିନ ବନ୍ଦୀଶାଳାରେ ରହି ମୁକ୍ତ ହୋଇଛନ୍ତି ଏବଂ ଆମେ ତାଙ୍କୁ ପଛୋଟିବାକୁ ଯାଇଛୁ । ପୂର୍ବ-ୟୁରୋପୀୟ କମ୍ୟୁନିଷ୍ଟ ଭୂ-ଖଣ୍ଡରେ ଯାହା ଯାହା ଘଟିଗଲା, ସେ ନେଇ ସେ ବିକ୍ଷୋଦ୍‌ଗାର କରୁଥିଁନ୍ତି ତାଙ୍କର ଚିରାଚରିତ ଗଞ୍ଜାମିଆ ଭାଷାରେ । ମୁଁ ତାଙ୍କୁ ଟିକେ ଥଟ୍ଟା କରି ପଚାରିଦେଲି, ଆପଣ ନିଜେ ପରା ଜଣେ କମ୍ୟୁନିଷ୍ଟ !!

ସଦାନନ୍ଦବାବୁଙ୍କୁ ଦେଖେ କିଏ !! ସେହି ଦୃପ୍ତଦୀପ୍ତ ସ୍ୱର । କି' କମ୍ୟୁନିଷ୍ଟ କହୁଛ ହେ ! ଲଜ୍ଜା ଲାଗୁଛି ମୋତେ । ମୋର କ'ଣ ଆଉ କିଛି ପରିଚୟ ନାହିଁ ! ଖାଲି କମ୍ୟୁନିଷ୍ଟ...... କମ୍ୟୁନିଷ୍ଟ..... କମ୍ୟୁନିଷ୍ଟ । ଆଜି ଠାରୁ ଜାଣିରଖ, "ମୁଁ ଜଣେ ସାଧାରଣ ମଣିଷ । ମୋର ନାମ ସଦାନନ୍ଦ ମହାନ୍ତି...... ତା' ପଛରେ ତୁମକୁ ଭଲ ଲାଗିଲେ କମ୍ୟୁନିଷ୍ଟ ବୋଇଲେ ଯୋଡ଼ିପାର । କମ୍ୟୁନିଷ୍ଟ ନ ହୋଇ ଏ ଦୁନିଆରେ ଅନେକ ମହତ ଲୋକ ଅଛନ୍ତି । ଆଉ ଏ ଗୋର୍ବାଚୋଭ୍ ମାର୍କା ଅମଣିଷ କମ୍ୟୁନିଷ୍ଟ ମଧ୍ୟ କମ୍ ନାହାନ୍ତି !!" ମୁଁ ଭାବୁଛି, ସଦାନନ୍ଦବାବୁଙ୍କ ଭାଷାର ଅର୍ଥ ଏଇଆ ଥିଲା, "ସବୁରି ଉପରେ ମଣିଷ ସତ୍ୟ" । ମୃତ୍ୟୁ ଏବଂ ମଣିଷପଣିଆ ଏଇ ଉଭୟ ସତ୍ୟ, ଆଉ ସବୁ ମିଥ୍ୟା । ସଦାନନ୍ଦବାବୁଙ୍କ ମରଶରୀର ସେହି ମିଥ୍ୟାର ଆଉ ଏକ ଘଟଣାନ୍ତର ।

ସଦାନନ୍ଦବାବୁଙ୍କର ମରଶରୀରକୁ ସ୍ୱର୍ଗଦ୍ୱାରରେ ଦାହ କରିବା ପାଇଁ ତାଙ୍କର ଯେଉଁ କମ୍ୟୁନିଷ୍ଟ ବନ୍ଧୁମାନେ ଭ୍ରୁକୁଞ୍ଚନ କରିଛନ୍ତି, ସେମାନେ ସମସ୍ତେ ନିଜ ଆତ୍ମା ସହିତ ପ୍ରତାରଣା କରୁଛନ୍ତି । ତାଙ୍କୁ ସ୍ୱର୍ଗଦ୍ୱାରକୁ ନେବାର ନିଷ୍ପତ୍ତି ହେଉଛି, ତାଙ୍କର ସହଧର୍ମିଣୀ, ପୁତ୍ର, କନ୍ୟା, ଜାମାତା ଏବଂ ପରିବାରର ସଭ୍ୟମାନଙ୍କର । ଯେଉଁମାନେ କି' ତାଙ୍କୁ ବଞ୍ଚାଇ ରଖିବା ପାଇଁ କେତେ ବିନିଦ୍ର ରଜନୀ ଉଜାଗରରେ ପୁହାଇ ଦେଇଛନ୍ତି । ସଦାନନ୍ଦବାବୁ ବହୁ ଦିନ ଧରି ରକ୍ତଚାପ, ହୃଦ୍‌ରୋଗ ଏବଂ ମଧୁମେହ ରୋଗରେ ଆକ୍ରାନ୍ତ ହୋଇ ମଝିରେ ମଝିରେ ମେଡିକାଲ୍‌ରେ ଭର୍ତ୍ତି ହୁଅନ୍ତି । ତାଙ୍କର ଶାରୀରିକ ସତ୍ତାକୁ ଏ ଦୁନିଆରେ ଜୀବିତ ରଖିବା ପାଇଁ ଯେଉଁ ସେବା, ତ୍ୟାଗ, ସାନିଧ୍ୟ, ସଖ୍ୟ ସର୍ବୋପରି ଆର୍ଥିକ ସହାୟତାର ପ୍ରୟୋଜନ ଥିଲା, ସେସବୁ ପରିବାରର ।

"ସଦାନନ୍ଦ ମହାନ୍ତି ନାମକ" ମଣିଷର ରାଜନୈତିକ, ସମାଜିକ, ଭାବଗତ କଥା ଜନ୍ମଗତ ସମ୍ପତ୍ତିର ସେମାନେ ହେଉଛନ୍ତି ପ୍ରକୃତ ଉତ୍ତରାଧିକାରୀ । ଏହା ହିଁ ସତ୍ୟ ଏବଂ ସ୍ୱାଭାବିକ । ଯେଉଁଠି ଏହାର ବ୍ୟତିକ୍ରମ ଘଟିଛି, ସେଠାରେ ନୈତିକ ବିଲକ୍ଷଣମାନ ଦେଖାଦେଇଛି । ଆଜି ଅଧିକାଂଶ କମ୍ୟୁନିଷ୍ଟ ମାନଙ୍କ ଜୀବଦ୍ଦଶାରେ ତାହା ବହୁଳ ଭାବରେ ପ୍ରତିଫଳିତ ହୋଇଛି । କିଏ ଏହାର ବ୍ୟତିକ୍ରମ ? ଅନ୍ତତଃ ପକ୍ଷେ ସଦାନନ୍ଦବାବୁ ଦ୍ୱୈତ ଚରିତ୍ରର ବ୍ୟକ୍ତି ନୁହନ୍ତି ।

ସଦାନନ୍ଦବାବୁଙ୍କର ପତ୍ନୀ ଅସୀମ ଧୈର୍ଯ୍ୟଶୀଳା । ସେଦିନ ମୁଁ ତାଙ୍କ ସହିତ ବହୁତ ସମୟ ଏକାନ୍ତରେ କଟାଇଛି । ମେଡିକାଲ୍ ଖଟରେ ପଡ଼ିଥିବା ସଦାନନ୍ଦବାବୁଙ୍କର ବିରାଟ ଶରୀରର ଗୋଟିଏ ପଟରେ ସେ ଓ ଆରପଟରେ ମୁଁ । ଦିନ ସାରା ତାଙ୍କ ଆଖିରେ ଲୁହ ମୁଁ ଦେଖିନାହିଁ । କିନ୍ତୁ ଅନ୍ତରର ଚାପିଲା କୋହକୁ ମୁଁ ମନେ ମନେ ଦୈର୍ଘ୍ୟ ପରିଧି ଦେଇ ମାପି ଯାଉଥିଲି । ସଦାନନ୍ଦବାବୁଙ୍କର ଜଡ଼ ସତେଜ ମୁହଁ ଉପରେ ମୁହଁ ରଖି ତାଙ୍କର ବିଦଗ୍ଧ ଆତ୍ମା ବହୁବାର ବାହୁନି ଉଠିବାର ମୁଁ ଶୁଣିଛି । "ତୁମେ ମୋତେ ଏକା ଛାଡ଼ି ଚାଲିଯାଉଛ ! ମୁଁ କ'ଣ କରିବି କୁହ । ସାରା ଦୁନିଆଟା ମୋତେ ଅନ୍ଧକାର ଦିଶୁଛି । ଭାବିଥିଲି, ଏଣିକି ତୁମେ ସବୁବେଳେ ମୋ ପାଖରେ ରହିବ । ରାଜନୀତି, ପାର୍ଟି, ଆନ୍ଦୋଳନ, ର୍ୟାଲି କଥା କହି ମୋତେ ଆଉ ଠକି ଦେଇ ଯାଇପାରିବ ନାହିଁ !"

ସଦାନନ୍ଦବାବୁଙ୍କର ମୃତ୍ୟୁ ଯେପରି ଦୟନୀୟ, ତତୋଧିକ ଭୟଙ୍କର । ୧୯୪୩ ମସିହାରେ ଭଗବତୀ ଚରଣ ପାଣିଗ୍ରାହୀ ଗଞ୍ଜାମ ଜିଲ୍ଲାରୁ ହଇଜା ଆକ୍ରାନ୍ତ ହୋଇ ଚିକିତ୍ସାର ଅବହେଳା ଯୋଗୁଁ ମୃତ୍ୟୁବରଣ କରିଥିଲେ । ୦୯୯୧ ମସିହାରେ ସଦାନନ୍ଦ ମହାନ୍ତି ଦଳୀୟ କାର୍ଯ୍ୟରେ ତତ୍ପରପାଣି ଯାଇ 'ଫେରିବ୍ରାଲ୍' ମ୍ୟାଲେରିଆରେ ସଂକ୍ରମିତ ହୋଇ ଦୁଇ ଦୁଇଟା ବଡ଼ ମେଡିକାଲ୍‌ରେ ରହି ଶେଷାବସ୍ଥାରେ ରୋଗ ଚିହ୍ନଟ ହୋଇ ନପାରି ମୃତ୍ୟୁବରଣ କଲେ । ଏହାଠାରୁ ବଳି ବଡ଼ ଅପରାଧ ଏ ଦୁନିଆରେ ଆଉ କ'ଣ ଥାଇପାରେ !! ସଦାନନ୍ଦବାବୁ ଜୀବନ ଭରି ଲଢେଇ କରିଥିଲେ ତାଙ୍କରି ଜୀବଦ୍ଦଶାରେ ଏକ ସୁଖୀ ଶାନ୍ତ ସ୍ୱାଭାବିକ ସଂସାର ଦେଖିବା ପାଇଁ । ନିରାମୟ ନିରାପଦ ଜୀବନ ବିତାଇବା ପାଇଁ । ସମସ୍ତଙ୍କ ପାଇଁ ସମାନ ସୁଖ ସୁବିଧା ମିଳିବା ପାଇଁ ।

ସୂର୍ଯ୍ୟ ସବୁ ଦିନେ ଉଦୟ ହେବେ । ଅସ୍ତ ଯିବେ । ପୂର୍ବ ପୁରୁଷମାନଙ୍କ ପରି ସଦାନନ୍ଦ ମହାନ୍ତିଙ୍କ ସ୍ମୃତି କ୍ରମଶଃ ମଳିନ ହୋଇ ଆସିବ । କିନ୍ତୁ ଯେଉଁ କେତେଜଣ ତାଙ୍କୁ ଜୀବନାବଧି ଭୁଲିଗଲେ, ସେମାନଙ୍କ ମଧ୍ୟରୁ ମୁଁ ଜଣେ । ମୋ' ପାଇଁ ସେ ସଦା ବିଦ୍ୟମାନ । ମୋରି ବସୁନ୍ଧରା କୋଳରେ ସେ ଶତପୁତ୍ର ହୋଇ ଜନ୍ମଲାଭ କରିବେ । ପ୍ରିୟଜନଙ୍କ ସ୍ମୃତିରେ ମନେ ପଡ଼େ :

"ବହୁ ଦିନ ପରେ ଯେତେବେଳେ ତୁମ
ସ୍ମୃତି କବର ଖୋଲି
ଅଜାଡ଼ିବି ସେଠି ପୁଷ୍ପ ଆଞ୍ଜୁଳା
ହୃଦୟେ ଆବେଗ ଭରି ।
ଢାଳିଦେବ ସେଠି ଗୋଟିଏ ବିନ୍ଦୁ
ନୟନୁ ଲୋତକ ଧାର
ଅବଗାହିଯିବ ସେହି ତୋ' ଚରଣ
ମନ୍ଦାକିନୀର ଧାର !"